ଗମନ : ଲେଖକ : କିଶୋରୀ ଚରଣ ଦାସ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ, ବିନୋଦ ବିହାରୀ, କଟକ-୭୫୩୦୦୨, ପ୍ରଥମ ସଂସ୍କରଣ : ୧୯୮୦, ଦ୍ୱିତୀୟ ସଂସ୍କରଣ : ୧୯୮୩, ପ୍ରଚ୍ଛଦପଟ : ଅସିତ ମୁଖାର୍ଜୀ, ମୁଦ୍ରାକର : କୋଣାର୍କ ପ୍ରିଣ୍ଟର୍ସ, ଖଟବିନ୍ ସାହି, କଟକ-୭୫୩୦୦୮ ।

**GAMANA** Author : **KISHORI CHARAN DAS**, Publisher : **SAHADEV PRADHAN**, Friends' Publishers, Binodbehari, Cuttack-753002, Orissa (India), First Edition : 1980, Second Edition : 1983, Cover Design : **Asit Mukherjee**, Printer : **KONARK PRINTERS**, Khatbin Sahi, Cuttack-753008. **Price : Rs. 13.50**

ବ୍ୟକ୍ତିଗତ ଜୀବନ ପରି ବ୍ୟକ୍ତିଗତ ମୃତ୍ୟୁ ମଧ୍ୟ ସତ୍ୟ । ମୃତ୍ୟୁ ପରେ କିଛି ନ ଥାଇ ପାରେ, କିନ୍ତୁ ଆମ ନିଜ ନିଜର ଶୂନ୍ୟତା ଭିନ୍ନ ଓ ସ୍ୱାଧୀନ ।

—ଇ. ଏମ. ଫୋର୍‌ଷ୍ଟରଙ୍କ ଗୋଟିଏ ଉପନ୍ୟାସରୁ ଗୃହୀତ ।

# ସୂଚୀ


| | |
|---|---|
| ତୁ କଅଣ ରାମକୃଷ୍ଣ ? | ୧ |
| କୁଆପଥର | ୧୬ |
| ଗୁରୁ ଦକ୍ଷିଣା | ୩୨ |
| ଶିତ୍କାର | ୪୮ |
| ସ୍ୱପ୍ନକଥା | ୫୭ |
| ବଡ଼ ଅପା | ୭୫ |
| ଜିଘାଂସା | ୯୫ |
| ଦଶରାହୁ ଢଆଲ ଯାଏଁ | ୧୦୩ |
| ଗମନ | ୧୨୦ |

## ଲେଖକଙ୍କର ଅନ୍ୟାନ୍ୟ ଗ୍ରନ୍ଥ :

| | |
|---|---|
| ଭଙ୍ଗା ଖେଳନା | (ଗଳ୍ପସଂଗ୍ରହ) |
| ଘରବାହୁଡ଼ା | ( ,, ) |
| ଲକ୍ଷବିହଙ୍ଗ | ( ,, ) |
| ମଣିହର | ( ,, ) |
| ଠାକୁର ଘର | ( ,, ) |
| ନାଲି ଗୁଲୁଗୁଲୁ ସାଧବବୋହୂ | ( ,, ) |
| Faces in the Dark | (ଇଂରାଜୀ କବିତା ସଂଗ୍ରହ) |

# ତୁ କଅଣ ରାମକୃଷ୍ଣ ?

ଆ-ବେ ତୁ କଅଣ ରାମକୃଷ୍ଣ ?

ତା'ର ଗୋରା ସ୍ୱାସ୍ଥ୍ୟବାନ୍ ପିଠିର ଖଟୁଡ଼ିକୁ କେନ୍ଦ୍ର କରି ମୋର ବିରାଗ ଉତୁରିପଡ଼ିଲା, ମୁଁ ଆଉ ସହିପାରିଲି ନାହିଁ । ତା'ର ଧ୍ୟାନ, ଅତିଶଯ୍ୟ ଅନାବଶ୍ୟକ ଆଖିବୁଜା ମୋତେ ବିଷପରି ମନେହେଲା । ମନେହେଲା ତା' ପ୍ରେମ ଟାଙ୍କିର ଉଠୁଛି । ହୁଏତ ପ୍ରେମ ଟାଙ୍କିର ଉଠି ଖଟୁଡ଼ି ପାଲଟିଯିବ; ଗୋଟିଏ ଦୁଇଟି ନୁହେଁ, ହଜାର ହଜାର । ଇସ୍ ! ମୁଁ କାହିଁକି ତା'ର କୁତ୍ସିତ ଦେହକୁ ଅନେଇ ରହିବି ? ମୋର କଣ ଅନ୍ୟ କାମ ନାହିଁ ? ମୁଁ ଯିବି ଯେ, ଗଲା ପୂର୍ବରୁ ହାଡ଼ଜଳା ଆଳୁର ପଦେ ଶୁଣେଇ କରି ଯିବି, ମୋର ତିରସ୍କାର, ମୋର ସୁସ୍ଥ ମନର... ଛିଃ ଛିଃ ଛିଃ...

ମେସ୍ କୁକର ରଥିଆ କବାଟ ପାଖରେ ଛିଡ଼ା ହୋଇ ପୁଣି ଥରେ ଚେତାଇ ଦେଲା—ଆଜ୍ଞା, ଭାତ ଥଣ୍ଡା ହୋଇଯାଉଛି, ପୁଟୁଣି ପଳେଇବ ।

ଭାତ ଥଣ୍ଡା ହୋଇଯାଉଛି, ପୁଟୁଣି ପଳେଇବ, ପଳାଉ । ତଥାପି ଆମର ଏଇ ନକଲି ରାମକୃଷ୍ଣର ଧ୍ୟାନ ଭଙ୍ଗ ନାହିଁ । ତାକୁ ମଧ୍ୟ ଭୋକ କରିବା କଥା । ବଳପଡ଼ିଲା ପରି ସ୍ୱାସ୍ଥ୍ୟ ପାଇଛି, ଅଥଚ ଭୋକ କରୁନାହିଁ ? ଆସି ପନ୍ଦର ମିନିଟରୁ ଊର୍ଦ୍ଧ୍ୱ ହେଲାଣି ସେମିତି ଗୋଟିଏ ଜୀଅନ୍ତା ପଥର ପରି ବସିରହିଛି (ଏତେ ଗୋରା ହୋଇ ନ ଥିଲେ ସେ କଣ ଜୀଇଁଥାଆନ୍ତା, ତା' ଦେହ ଏମିତି ଚମକୁଥାଆନ୍ତା ?) ସକାଳ ନୁହେଁ, ସଞ୍ଜ ନୁହେଁ, ଠିକ୍ ଖିଆବେଳ ଟାରେ । ସତେ କି ମାଆ ତା' ଆଡ଼କୁ ଅନେଇ ହସିଦେଲେ, ଆଉ ବିଚରା ଥୟ ଧରି ପାରିଲା ନାହିଁ, ଭୋକ ଶୋଷ ଭୁଲିଗଲା ।

ଆବ୍‌ବେ—

ଆଜ୍ଞା, ଆପଣ ଆସନ୍ତୁ, ସେ ଏଇକ୍ଷଣି ଉଠିବେ ନାହିଁ ।

ରଥିଆ ମଧ୍ୟ ମାନିନେଇଛି । ହଷ୍ଟେଲ୍ ପିଲାଙ୍କ ସାଙ୍ଗରେ ସମାନ ହୋଇ ଆମର ଏଇ ଗୋରା ଗୋଲୁକକୁ ପାସଙ୍ଗରେ ପକାଉ ନାହିଁ । କହୁଛି, ସେ ଏଇକ୍ଷଣି ଉଠିବେ ନାହିଁ; ନ ଉଠିଲେ ଖସିଯାଉଛି ! ଅଭଲା ଅବାଗିଆ ବାବୁ, ଗୋଠଖଣ୍ଡିଆ । ଖାଇଲେ କେତେ ନ ଖାଇଲେ କେତେ; କାହାର ମୁଣ୍ଡ ବଥେଇବ ନାହିଁ । ତେବେ ଦରଦ କ'ଣ କେବଳ ମୋଅରି ?

ନା, ତା' ନୁହେଁ । ସେ ମୋର ସାଙ୍ଗ ନୁହେଁ । ତା' ସାଙ୍ଗରେ ମୋର ଚେହେରା ଚରିତ୍ର ମୋଟେ ମିଶେ ନାହିଁ । ତା'ର ବିଦ୍ୟାବୁଦ୍ଧି ମଧ୍ୟ ମୋ'ଠାରୁ ଊଣା, ସାହିତ୍ୟ ଛଡ଼ା ଆଉ କେଉଁ ପାଠରେ ଶତକଡ଼ା ପଚିଶରୁ ଟପିଲା ପରି ମନେପଡ଼ୁ ନାହିଁ । ଗୋରା ହେଲେ କ'ଣ ହେବ, ଗୋବ ଗୋବ ସ୍ୱାସ୍ଥ୍ୟ ମାଂସପେଶୀ ଟାଣୁଆ, ମୁଣ୍ଡରେ ଶ୍ରେଷ୍ଠ ଶ୍ରେଷ୍ଠ ବାଳ ଆଉ ମୁଣ୍ଡରେ ଯୋଡ଼ାଏ ଭଉଁର (ଯେତେ ଗୋଟାଏ ଅସାଧାରଣ ବସ୍ତୁ ବୋଲି କେତେଥର କହିଛି, ହେଁ ହେଁ ହୋଇ ହସିଛି), ହେଁ ହେଁ ହସ, ଦେଖେଇଲା ପରି ନୁହେଁ ଜଣେଇଲା ପରି । ନିଅ, ମୋ ଆନନ୍ଦରୁ କିଛି ନେଇଯାଅ ଭଲା, ଏବଂ ତାର ସେଇ ଚାହାଣି, ନିହାତି ସାଦା ଆଉ ଖୋଲା, ମେଲା ହୋଇ ପଡ଼ିଥିବା ଦରଜା ପରି, ବୁଦ୍ଧି ନାହିଁ, ଭାବନା ନାହିଁ, କିଛି ନାହିଁ ସେଥିରେ, ମହାଶୂନ୍, ଶୂନ୍ ଆଉ ସବୁ । ବେଳେ-ବେଳେ ତା'ର ସେଇ ଚାହାଣିକୁ ଦେଖିଲେ ଡର ମାଡ଼େ ଯେତେ କି ସବୁରି ଭିତରେ ମୋତେ ମଧ୍ୟ ଟାଣିନେବ ଆଉ ଶୂନ୍‌ରେ ମିଶେଇ ଦେବ । ଗୋରା ହେଲେ କ'ଣ ହେବ କେହି ତାକୁ ସୁନ୍ଦର ବୋଲି କହିବେ ନାହିଁ, ଗୋରା ହେଲେ କ'ଣ ହେବ ତାର ପିଠିରେ ସେଇ କୁତ୍ସିତ ଖାଲୁଡ଼ି । ମୁଁ ତା ପଛରେ ଲାଗିଛି, କାହିଁକି ନା ମୋତେ ରାଗ ଲାଗୁଛି, ତା'ର ଏଇ ଧ୍ୟାନପଣ ଦେଖିଲେ ମୁଁ ନିଜକୁ ସମ୍ଭାଳି ପାରୁ ନାହିଁ । ସେ କ'ଣ ଭାବୁଛି ସେ-ଇ ସତ, ଆଉ ମୁଁ, ମୋର ପରି ଅନ୍ୟମାନେ, ଆମେ ଯେତେକ ହଷ୍ଟେଲ୍ ପିଲା କ୍ଲାସ ପିଲା ଆମେ ସମସ୍ତେ ମିଛ ?

କେବଳ ଲାଗିଲେ ଯଥେଷ୍ଟ ନୁହେଁ, ଘୃଣା ନ କଲେ ପେଟ ପୂରିବ ନାହିଁ । ସେଇଲାଗି ମୁଁ ଦେଖିଥିଲି କେମିତି ତା'ର ରୋମ ଟାଙ୍କୁର ଉଠୁଛି, ପ୍ରତି ରୋମ…

ମୁଁ ରଥିଆକୁ ଗୁଳିଯିବାକୁ କହିଲି । ମୁଁ ଆଜି ଖାଇବି ନାହିଁ । ହୋଇପାରେ ଯେ ଆମ ମେସ୍ ପୂଝାରୀ ଆଜିକାଲି ଭଲ ରାନ୍ଧୁଛି, ସକାଳୁଆ ସ୍କୁଲରୁ ଫେରି ତା'ର ଦହି ପଖାଳ, ମାଛ ଭଜା, ଶାଗ ଖରଡ଼ା ଖାଇବାକୁ ଭଲ ଲାଗୁଛି, ତା'ପରେ ଦିବ୍ୟ ଆରାମ, ଖଟରେ ପଡ଼ି ଦରବୁଜା ଆଖିରେ ଶୋଇରହି ଆଉ ଛବି ଦେଖି - ଆମ ଉପର କ୍ଲାସର ପୁଷ୍ପା, ଏସ୍. ପି. ଙ୍କ ଝିଅ, ରଘୁ ତିଆଡ଼ୀ ତାକୁ ଫୁସ୍-ପା ବୋଲି କୁହେ । ଧର ସେ ଝିଅ ନିଜ ଓଠରେ ଫୁସ୍-ପା ବୋଲି କହିବ, ତା'ର ସାନ ଓଠ ଚୁଚୁମିଲା ପରି ଦେଖାଯିବ । ସେଇଠୁ ସେ ଆମ ସାଙ୍ଗରେ ଖେଳିବ, ଥଟ୍ଟା ନକଲ ହେବ, ତା'ର ଗ୍ରୁଢଣୁ ଲୁଗା ଖସିଯିବ, ତା'ର ବେଣୀ ବଡ଼ ବଡ଼ ଗୋଲ । ଦିନେ ପୁଷ୍ପା ହେଲେ ତ ଆଉ ଦିନେ ପାତଳୀ ରାଧା ମହାପାତ୍ର; କିମ୍ବା ଖୋଦ ଡ୍ରଇଂ ମାଷ୍ଟ୍ରାଣୀ ମିସ୍ ରଜନୀ ଘୋଷ (ମନେ ମନେ ଯାହାକୁ ଯେମିତି ଦେଖ, କିଏ ଡଆଶବାକୁ ଅଛି ?) କିନ୍ତୁ ମୁଁ ଆଜି ଖାଇବି ନାହିଁ କି

କିଛୁ କରିବ ନାହିଁ । ଶ୍ଳୋକ ମେଣ୍ଟାଇବାକୁ ବସିଲେ ଘୃଣାକୁ ତେଜେଇ ପାରିବ ନାହିଁ, ଏଇ ଗୋକୁଳ ଘଟଣାକୁ ଶେଷଯାଏ ଦେଖି ପାରିବ ନାହିଁ ।

ମୁଁ ସେଇଠି, ମାନେ ଗୋକୁଳର ଓଡ଼ନ ନମ୍ବର ରୁମ୍‌ରେ ତା' ପିଠିକୁ ଅନେଇ ଛିଡ଼ା ହୋଇ ରହିଲି । ମୋ ପାଟିରୁ ଆଉ କଅଣ ଅସଭ୍ୟ ସଭ୍ୟ ବାହାରୁଛି, ବାହାରିବ ବୋଲି ଅପେକ୍ଷା କଲି ।

ଧ୍ୟାନରେ କ'ଣ କହୁଛୁ ? ମାଆ, ମୋତେ ବିଦ୍ୟା ଦିଅ, ବୁଦ୍ଧି ଦିଅ, ଧନ ଦିଅ ? ନା, ସେ କୁଆଡ଼େ ସେମିତି କିଛି ମାଗେ ନାହିଁ । ଗଲାବର୍ଷ ଦୁର୍ଗା ପୂଜାରେ ଆମେ ସ୍କୁଲ୍ ଦୁର୍ଗାଙ୍କ ଆଗରେ ପୁଷ୍ପାଞ୍ଜଳି ଧରି ହେମିତ କଣ କହୁଥିଲୁ, ବ୍ରାହ୍ମଣ ସାଙ୍ଗରେ ସଂସ୍କୃତ ପଢ଼ୁଥିଲୁ । ଗୋକୁଳ ସେଇଠି ଅଭଦ୍ରଙ୍କ ପରି ହସି ପକେଇଲା । ମୁଁ ଭାବିଲି ପିଲା ଆମ ସାଙ୍ଗରେ ପଢ଼ି ଚଗଲା ଧରିଲାଣି । ହେଲେ ସଭା ମଝିରେ କୁକର୍ମ କଲେ—ପୁଣି ତା'ର ସେଇ ଯେଉଁ ହେଁ ହେଁ ହସ—ସମସ୍ତେ ତା'କୁ ଚିହ୍ନି ରଖିବେ, ଆମ କ୍ଲାସର ନିନ୍ଦା ହେବ । ସେଇଥିଲାଗି ମୁଁ ଘରେ ବିରକ୍ତ ହୋଇ ପଚାରିଲି, "କି'ରେ ତୋର କଣ ହେଲା ? ହେଡ୍‌ମାଷ୍ଟର ଅଛନ୍ତି, ଆଉ ଯେତେକ ସ୍କୁଲପିଲା, ଗାର୍ଜେନ, ତୁ ଦେବୀଙ୍କ ସାମନାରେ ସେମିତ ହସିଲୁ କାହିଁକି, ?" ମୁଁ ପ୍ରଶ୍ନ ପଚାରୁ ପଚାରୁ ତା' ମୁହଁରେ ଦୁଃଖ ଲେପି ହୋଇଗଲା । କହିଲା, "ମୋତେ କ୍ଷମାକର । ମୁଁ ସେମାନଙ୍କୁ କ୍ଷମା ମାଗିବି । କ'ଣ ହେଲା କି ମୋର, ମନେହେଲା ମାଆ ହସୁଛନ୍ତି, କହୁଛନ୍ତି ମଲାମ, ଇଏ କି ଭଲପାଇବା, ଖାଲି ମୋତେ ଦେ-ଦେ-ଦେ !"

ସେ କୁଆଡ଼େ ତାଙ୍କ ଦେଖାଦେଖି ହସିଲା ! ମାଆଙ୍କର ଥଟ୍ଟାଳି ହସକୁ ସେଇ କେବଳ ଦେଖିଲା ଆଉ ହେଁ ହେଁ ହୋଇ ହସିଉଠିଲା ! ! ଏଇକ୍ଷଣି କଣ ସେ ନିଜେ କହୁଛି ମାଆ ମୋତେ ନେ—ନେ—ନେ ! ! :

ମିଛ ।

ମୋ ପାଟିରୁ ଅସଭ୍ୟ ସଭ୍ୟ ବାହାରିବ କଅଣ, ମୁଁ ତା'ର ଧ୍ୟାନର ଭିତର ପଦଗୁଡ଼ିକରେ କାଳି ବୋଳିଦେଲି । ଧରି ସେ କହୁଛି ମାଆ ମୋତେ ନେ —ନେ...ନେ, ତା'ର ମାନେ କଅଣ ? ପୁଣି ଥରେ କଅଁଳା ପିଲା ହୋଇ ମାଆ ଦୁଦୁ ଖାଇବ ବୋଲି ଗୃହୁଁଛୁ ? ତୋ ମୁହଁକୁ ଟିକିଏ ଲାଜ ନାହିଁ ? ଯାଉନୁ ତୋ ନିଜ ମାଆ ପାଖରେ ସେମିତ ଚେଗେଇ ହେବୁ ? ପାରିବୁ ? ଓଁ, ଇଏ ହେଉଛନ୍ତି ଜଗନ୍ମାତା ପରା । ତାହାହେଲେ ବାବୁ ତାଙ୍କୁ ଫୋଟୋ ମାଇକିନିଆ ଛବିରେ ବାନ୍ଧି ରଖିଛୁ କାହିଁକି ? ମାଆ ଖଣ୍ଡା ଧରିଛନ୍ତି, ପଦ୍ମ ଫୁଲ ଧରିଛନ୍ତି ଇତ୍ୟାଦି । ହେଲେ ସେଇ ମାଇକିନିଆ ଚେହେରା । ତୁ ମାନିବୁ ନାହିଁ ସିନା, ମୁଁ ଜାଣେ ତୁ ମୋର

ପର ବାଇସ୍କୋପ ଦେଖୁଛୁ । ତୁ ତାକୁ କହୁଛୁ ମୋତେ ନେ, ଆଉ ସେ ତୋତେ ପାଖକୁ ନେଇ ଯାଉଛି, ଗୁଡାକୁ ଲମ୍ବା ଖଟସେଇ ତୋତେ ଚପି ଧରୁଛି, ସେଇଥିରେ ତୋ ରୋମ ଟାଙ୍କୁରଉଠୁଛି—ନୁହେଁ ? ତୁ ମାନବୁ ନାହିଁ; କିନ୍ତୁ ସେଇ ହେଉଛି ସତ, ହଜାରବାର ସତ । କାହିଁକି, କାହିଁକି ତୁ ମାନବୁ ନାହିଁ—

ତୁ ମିଛୁଆ, ନିଜ ମିଛକୁ ଜାଣିପାରୁ ନାହୁଁ ।

ତୁ ପାଗଳ, ନିଜ ପାଗଳାମିକୁ ବୁଝିପାରୁ ନାହୁଁ ।

ନ ହେଲେ ଆମେ ସମସ୍ତେ ପାଗଳ ଓ ମିଛୁଆ । ମୁଁ, ମଧୁ, ରମାକାନ୍ତ, ବଣୋଇ, ଆମ କ୍ଲାସ ମନିଟର, ଆମ ହେଡ଼ମାଷ୍ଟର, ଆମ ମନ୍ତ୍ରୀ, ଲାଟସାହେବ; ଯେତେକ ଲୋକ ତାଙ୍କ ନିଜ କାମ କରୁଛନ୍ତି, ଯଥାସମୟରେ ଠାକୁରଙ୍କୁ ମୁଣ୍ଡିଆ ମାରୁଛନ୍ତି, ଖାଇଲାବେଳେ ଖାଉଛନ୍ତି, ଝିଅମାନଙ୍କୁ ନେଇ ଯାହା ଯେମିତି ଭାବିବା କଥା କରିବା କଥା କରୁଛନ୍ତି, ଆଉ ମଲାବେଳେ ମରୁଛନ୍ତି ।

କେଉଁ ଅଧିକାରରେ ତୁ ନିଜକୁ ଏମିତି ଅଲଗା କରି ଦେଇଛୁ ? କେଉଁ ଅଧିକା ଛେନାଗୁଡ଼ ପାଇଛୁ ବୋଲି ତୋର ଏତେ ବଡ଼ପଣ ?

ଜ୍ୟେଷ୍ଠମାସରେ ଖେଳିକୁ ଖେଳେଇ ଖେଳେଇ ଘରଚଟିଆ ଚଢ଼େଇଟିଏ ଘର ଭିତରକୁ ପଶିଆସିଲା । ଅବାଧରେ ଉଡ଼ିବୁଲିଲା, ଆମର ପାଖ ଦେଇ ଚକର ମାରିଲା, ଚଟାଣରେ ଖୁପୁରୁ ଖୁପୁରୁ ହେଲା । ମୋର ମନେ ହେଲା ସେ ମୋତେ ଗୋକୁଳ ସାଙ୍ଗରେ ଯୋଡ଼ି ସାରିଣୀ, ଗୋକୁଳାନନ୍ଦ ସ୍ଥାଣୁ ହୋଇ ଧ୍ୟାନରେ ବସିଛି ଏବଂ ମୁଁ ସ୍ଥାଣୁ ହୋଇ ଛିଡ଼ା ହୋଇ ରହିଛି । ସେ ତାର ମାଆକୁ ଦେଖୁଛି । ମୁଁ ତାକୁଇ ଦେଖୁଛି । ସତେକି ଆମେ ଦୁହେଁ ଦାଣ୍ଡ ଦେଉଳର ପଥର, ଗୋଟିକରେ ସିନ୍ଦୂର ଲାଗିଛି, ଆରକି ଲୁଖୁରା ।

ବୀର ମାହାନ୍ତି, ତୁ କାହିଁକି ସେଇ ଲୋକଟାକୁ ଛାଡ଼ିଦେଇ ଚାଲିଯାଉନୁ ? ତୁ କ'ଣ ତା'ର ଭାଇ ବନ୍ଧୁ, ନା ମନିଟର ? ବୀର, ତୁ ଯେତିକି ରାଗୁଛୁ ସେତିକି ଘୃଣା କରୁଛୁ କି ନାହିଁ କହିଲୁ ? ମୋ ରାଗର ଆଲୁଅରେ ତା'ର ଗୋରା ଦେହ ଜଳି ଉଠୁଛି । ସେ ଯେତେବେଳେ ଧ୍ୟାନ ସାରିଲା ପରେ ତୋ ଆଡ଼କୁ ଅନେଇବ ସେତେବେଳେ ତୋର ରାଗ ଆହୁରି ପାଚିବ, ହେଲେ ତା'ର ତନୁ ଆହୁରି ଚମକିବ । ଘୃଣା କାହିଁ କେଉଁ ଗାତରେ ପଶିବ ? ସେଇ ସାମାନ୍ୟ ହାସ୍ୟାସ୍ପଦ ଭାବୁଡ଼ି ?

ଶିଡ଼ି ପାହାଚରେ ସେମାନଙ୍କର ହାସ୍ୟରୋଳ ଶୁଣାଗଲା । ସେମାନେ ମେସ୍‌ରେ ଖାଇପିଇ ହାଲୁକିଟି ମାରି ଫେରୁଛନ୍ତି । ମୋତେ ଏଠି ଦେଖି ଛାଟିଲେଇ

ହସିବେ, ହଳୁଆ ପ୍ରଜାପତି ମିଶ୍ର ଆଖିମିଟିକା ମାରିବ, ଗୋକୁଳ ସାଙ୍ଗରେ ମୋର 'ଅନ୍ୟ' ସଂପର୍କ ଅଛି କି ବୋଲି ଇଙ୍ଗିତ କରିବ। ମଧୁ ସେ।

ପ୍ରଜାପତି ମିଶ୍ର ସମେତ ସେଇ ଦଳଟାକୁ ମୋର ବନ୍ଧୁମାନଙ୍କ ମର ବୋଲି କହି ମୁଁ ସେଠୁ ଚାଲି ଆସିଲି ଏବଂ ମୋର ରୁମ୍‌ରେ ପଶି କବାଟ ବନ୍ଦ କରିଦେଲି।

କେହି କାହିଁକି ବୁଝିବେ ନାହିଁ ଯେ ମୁଁ ବୁଝିବାକୁ ଚାହେଁ ? ଯେ ଗୋକୁଳର ମିଛକୁ ମୋଡ଼ିମାଡ଼ି ନର୍ଦ୍ଦମାରେ ଫିଙ୍ଗି ନ ଦେଲେ ମୋତେ ଶାନ୍ତି ଲଗିବ ନାହିଁ।

ଏଇକ୍ଷଣି ଆଉ ଖାଇବାକୁ ଯିବାର ପ୍ରଶ୍ନ ଉଠୁ ନାହିଁ। ଆରାମରେ ଶୋଇ ରହି ମନମୋହନିଆ ଛବି ଦେଖିବି ନା ଚେପା !

କିଛି ସମୟ ପରେ ମୋ ରୁମ୍‌ର ଅନ୍ୟ ଦୁଇଜଣ ଆସି ପହଞ୍ଚିବେ, କବାଟରେ ଧକ୍‌କା ମାରିବେ, କାହିଁକି ବନ୍ଦ କରିଥିଲୁ ବୋଲି ଜେରା କରିବେ।

ଅଶାନ୍ତିକୁ କାଟି ଦେବା ପାଇଁ ସହଜ ଉପାୟ, ମୋର ପନ୍ଦର ବର୍ଷିଆ ସ୍ୱଅଙ୍ଗକୁ ଚଳେଇବାକୁ ବସିଲି। ପାରିଲି ନାହିଁ।

ମୋତେ ଦୋଷ ଦେବା ଅନୁଚିତ। ସେଇ ପ୍ରଥମେ ମୋ ପାଖକୁ ଆସିଲ, ମୋତେ ଡାକିଲ, ଡାକିହାକି ଅଯଥା କଥା କହିଲ, ତା'ର ଭକ୍ତିପଣ, ଗାଉଁଲିପଣକୁ ଏତେ ବଡ଼ କରି ମୋ ଆଗରେ ଥୋଇଲ। ମୁଁ କଅଣ କରିଥାନ୍ତି ? ମୁଁ ତା' ହାତକୁ ଛୁଞ୍ଚାଡ଼ି ଦେଇଛି, ପ୍ରତକ୍ଷ୍ୟରେ ଇଙ୍ଗିତରେ କହିଛି ତୁ ଗୋଟିଏ ଅଜାଡିଆ ଗଧ ! ଆଉ କଅଣ କରିଥାଆନ୍ତି ?

ସେ ଯେତେବେଳେ ମେସ୍‌ରେ ବସି କେଉଁ ଶରଧା ଶାକରକୁ ମନେ ପକାଇଲା, ହାତ ଚାଟି ଚାଟି କହିଲା ଏତେଦିନକେ ତାଙ୍କ ଗାଁର ପଦୀନାନୀ ରନ୍ଧା ପରି ଲାଗୁଛି, ସେତେବେଳେ ସେ ମୋର ଆଡ଼କୁ ଚାହିଁ ତା'ର ଆନନ୍ଦ ଜଣାଇଲା। ସତେ କି ମୁଁ ତା'ର ପଦୀନାନୀକୁ ଜାଣିଛି ! ମୁଁ ତାକୁ କହିଲି, ଚୁପ୍ କର। ଆମ ସମ୍ଭ୍ରାନ୍ତ ପୃଷ୍ଠାଗ୍ନିର ମାନ ହାନି ହୋଇପାରେ। ସେ ମୋର ଆଦେଶ ମାନିଲା, କିନ୍ତୁ ଦୋଷ ହାଲୁକା କରିଦେବା ଛଳରେ ହେଁ ହେଁ ହୋଇ ହସିଲା।...ସେ ସେଦିନ ବଡ଼ସକାଳେ ଆମ ହଷ୍ଟେଲ୍ ବଗିଚାରେ କୋଡ଼ି ହାଣି ଘାସ ଉପାଡ଼ି

ତାକୁ ଡାକ ଛାଡ଼ିଲା ସେତେବେଳେ ସେ ମୋର ନାଁ ଧରି ଡାକ ଛାଡ଼ିଲା ( ସେ ମୋତେ ବାବୁ ଭାଇ ବୋଲି ଡାକେ, ଯଦିଓ ସେ ମୋ'ଠାରୁ ସାନ ନୁହେଁ, କୁହେ ଯେ ଭାଇ ପଦ ଯୋଡ଼ିଲେ ଭଲ ଲାଗେ ), ଆଉ ତା' ଦେହର ଝାଲବିନ୍ଦୁ ଦେଖେଇଲା । ମୁଁ ତା ମୁହଁରେ ଝରକା କବାଟ ବାଡ଼େଇ ଦେଲାରୁ ଦୌଡ଼ି ଦୌଡ଼ି ଧଇଁସଇଁ ହୋଇ ଉପର ମହଲାରେ ମୋ ପାଖରେ ଆସି ପହଞ୍ଚିଲା ଏବଂ ଦୋଷ ହାଲୁକା କରିଦେବା ଆଳରେ··· । କେବଳ ସେତିକି ନୁହେଁ, ମୋତେ ବିଚିତ୍ର କଥା ଶୁଣେଇଲା । କହିଲା– ବାବୁଭାଇ, ମଝିରେ ମଝିରେ ଏମିତି ମନ ଭରି ମାଟି ସାଙ୍ଗରେ ଲାଗିଲେ ଦମ୍ଭ ଆସେ, ଆକାଶରେ କୁଆଡ଼େ ଉଡ଼ି ହଜି ଯାଇ ପାରିବି ନାହିଁ ବୋଲି ମନେ ହୁଏ । ଆଉ କ'ଣ ସବୁ କହିଲା ମୋର ମନେ ନାହିଁ । କାହିଁକି ନା, ମୁଁ ସେଦିନ ପ୍ରଥମେ ତା ଦେହର ଉଗ୍ର ଉଜ୍ଜ୍ୱଳ କଳା-ଅସୁନ୍ଦର ଗୋରା-ଅସୁନ୍ଦର ଚେହେରାକୁ ପାଖରେ ଦେଖିଲି । ଯାହାହେଉ ମୁଁ ତାକୁ 'ଅଭଦ୍ର ମୋ ପାଖରୁ ପୁଚ୍ଛିଯା' ବୋଲି କହିଥିଲି । ଆଉ କ'ଣ କରିଥାଆନ୍ତି ?

ଯେଉଁଦିନ ପ୍ରଥମେ ତା'ର ଖୋଲା ଆଖିର ଧ୍ୟାନ, ମାନେ ତାର ସେଇ ଫାଉଲ ମୁକୁଳା ସର୍ବଗ୍ରାସୀ ଚାହାଣି ଦେଖିଲି, ମୁଁ ମୋ ରୁମ୍‌ରେ ଟେବୁଲ୍‌ର ଗୋଟିଏ କଡ଼ରେ ବସିଥିଲି । ସେ ଆସି ପହଞ୍ଚିଲା, ପହଞ୍ଚୁ ପହଞ୍ଚୁ ମୋତେ ପାର ହୋଇ ଝରକାବାଟେ ସିଧା ସଳଖ ଅନେଇଲା । ଅନେଇଲା ଯେ ଅନେଇଲା— । ମୁଁ ପ୍ରଥମେ ଭାବିଲି ତାକୁ କ'ଣ ରୋଗ ଧରିଲା, ଯେଉଁଥିରେ ତାର ମଣିଷପଣିଆର ଟିକ୍-ଟିକ୍ ବନ୍ଦ ହୋଇଗଲା, ଏଇକ୍ଷଣି ତାର ଆଖି କେବଳ ଅନେଇଛି କିନ୍ତୁ ସେଥିରେ ଭାବ ନାହିଁ ଚିନ୍ତା ନାହିଁ ଯଥା ମାଛ ଆଖି । ମୁଁ ଚୁପେ ଚୁପେ ପଛେଇ ଗଲି ଯେପରିକି ତା'ର ଚାହିଁଲା ବାଟରେ ମୋର ଛାଇ ପଡ଼ିବ ନାହିଁ । ହଠାତ୍ ସେ ଆଖିରେ ପଲକ ପକାଇ ମୋତେ ଦେଖିଲା ପରି ହେଲା । ଅପ୍ରତ୍ୟାଶିତ ଆଘାତ ପାଇଲା ପରେ ଆଘାତ-ମୂଳକୁ ଠଉରେଇଲା ପରି । କହିଲା—କାହିଁକି ? କାହିଁକି ସେମିତି କଲୁ ? କରିବୁ ନାହିଁ । ତୁ ଆଖି ପାହାନ୍ତାରେ ଥିଲୁ ବୋଲି ମୁଁ ମାଆକୁ, ତାର ସୁନ୍ଦରକୁ ଦେଖି ପାରିଲି, ନ ହେଲେ ମୁଁ କାଳେ···କାଳେ ଦେଖୁ ଦେଖୁ ମିଳେଇଯାଇଥାଆନ୍ତି । ମାଆ ନ ଥାଆନ୍ତା କି ସୁନ୍ଦର ନ ଥାଆନ୍ତା ! ସେଦିନ ମୁଁ ତାର ହାବଭାବ ଦେଖି ପ୍ରକୃତରେ ଡରିଯାଇଥିଲି । ଡର ଛାଡ଼ିଲା ପରେ ( ମିଛ କହିବି କାହିଁକି ) ଗୋଟାଏ କଞ୍ଚା ଆନନ୍ଦ ମୋର ମନକୁ ଆସିଥିଲା । ଆନନ୍ଦ, ଯେ ସତରେ ମୁଁ ଥିଲି ବୋଲି ସେ ତା' ମାଆର ସୁନ୍ଦରପଣକୁ ଦେଖି ପାରିଲା । ମୋଠେଇଁ କିଛି ବିଶେଷ ଗୁଣ ଅଛି, କଳା ଅଛି, ଯେଉଁଥିପାଇଁ ସେ ମୋତେ ଏମିତି ନେହୁରା ହେଲାପରି କହିଲା ।

ତେବେ ଖୁସି ହେବାର ପର ମୁହୂର୍ତ୍ତରେ ମୁଁ ଭିନ୍ନ ଭୟରେ ଶିହରି ଉଠିଲି । ତା' ମାନେ ସେ କ'ଣ ମୋତେ ଆକ୍ରମଣ ଧରିବାକୁ ଚାହେଁ ? ହେ ଭଗବାନ୍ ! ସେଦିନ ମୁଁ ଉଚିତ ମୁଖ-ବିକୃତ କରି ତା'କୁ କହିଥିଲି—ହ୍ୟାପ, ତୋ ଭଳିଆ ଗୋଟାଏ ବେହେଲ ଭିଣ୍ଡ ମୁଁ ପୃଥିବୀରେ ଆଉ କାହାକୁ ଦେଖିନାହିଁ ।

ହଁ, ରାଗି ସାରିଲା ପରେ ମୁଁ ସହଜ ନରମ ହେବାର ଛଳ କରିଥିଲି । ପଚାରିଲି—

"ହଇରେ, ତୋ'ର ସେମିତି କ'ଣ ହେଲା ? ଆଉ ହେବ ନାହିଁ ତ ?"

"ମୁଁ କେମିତି କହିବି ? ମାଆ କେତେବେଳେ କୁଆଡ଼ୁ ଆସି ପହଞ୍ଚିବେ, ମୁଁ କେମିତି ଜାଣିବି ?"

ମୁଁ ପୁଣି ବଢ଼ି ଉଠୁଥିବା ରାଗକୁ ସମ୍ଭାଳି ନେଇ ପଚାରିଲି—

"ଝରକା ସେପାଖରେ ଜହ୍ନ ନାହିଁ କି ତାରା ନାହିଁ, ମେଘ ନାହିଁ ବିଜୁଳି ନାହିଁ, ପାହାଡ଼ ନାହିଁ, ନଈ ପୋଖରୀ କଇଁ କମଳ କିଛି ନାହିଁ—ଲୁଚ୍ଛା ପଡ଼ିଆ, ଅନାବନା ଗଛ । ଥାର୍ଡକ୍ଲାସ ଉପରବେଳା ଚାରିଟା ପନ୍ଦର, ଏତିକବେଳେ ଏମିତିକା ଥାନରେ ମାଆଙ୍କର ଆସିବାକୁ ଥିଲା ?"

ସେ ହସିଲା ନାହିଁ କି ଉତ୍ତର ଦେଲା ନାହିଁ । ସତେକି ସେଥିରେ କିଛି ଗୂଢ଼ ରହସ୍ୟ ଅଛି, ମୋର ମୁଣ୍ଡରେ ପଶିବ ନାହିଁ ।

ସେ ହସିଲା ନାହିଁ କି ଉତ୍ତର ଦେଲା ନାହିଁ । ସେତେବେଳେ ତା' ଉପରେ ରାଗିବା ଛଡ଼ା ତାର ସେଇ ମାଆଙ୍କ ଉପରେ ଭୟାନକ ରାଗ ଆସିଲା । ଭାବିଲି, ସେଇ ମୋ ସାଙ୍ଗରେ ବାଦ କରୁଛନ୍ତି, ଏଇ ସୁଧାର ସାଧାରଣ ଗୋକୁଳ—ବନ୍ଧୁ ନ ହେଲେ କ'ଣ ହେବ, ମୋରି ପରି ଗୋଟିଏ ପିଲା—ତାକୁ ପାଲରେ ପକେଇ ନଷ୍ଟ କରିଦେବାକୁ ବସିଛନ୍ତି ।

ମୁଁ ଚାହିଁଲି—ମୁଁ ତାର ମିଛମାଆକୁ ଧରିପକେଇଦେବି । ଗୋକୁଳକୁ ବଞ୍ଚେଇବି ।

ମନେପକେଇଲି ସେଦିନ ସେ କହିଥିଲା ଯେ ମୁଁ ନ ଥିଲେ ସେ ମିଳେଇ ଯାଉଥାଆନ୍ତି । ଭାବିଲି, ମୋର ଦେହ ଅଛି, ରୂପ ଅଛି, ଦେହର ରଙ୍ଗ ସାବନା ହେଲେ କ'ଣ ହେବ ସେଥିରେ ମଧୁରଆପଣ ଅଛି, ମୋର ଆଖି ନାକ ଓଠରେ ଭାବ ଅଛି, ସ୍ଫୁରଣ, କମ୍ପନ··· । କେଉଁ ଅଶରୀରୀ ଅମରୀ ମାଆ ମୋତେ

ବଳାଯିବ ? ଧୀରେ ଧୀରେ ମୋର ଉଦ୍ଦେଶ୍ୟ ପାକଳ ହୋଇ ଆସିଲା । ମୁଁ ଗୋକୁଳକୁ ବଶେଇବି, କିଛି ହେଲେ କରିବି ।

ଥରେ ଦୋକାନ ବଜାରରେ କେତେ ବଦେଇ ଛବି ଦେଖୁ ଦେଖୁଁ ଗୋଟିଏ ମାଇକିନିଆ ଛବିର ଫଟୋ ମୋ ଆଖିରେ ପଡ଼ିଲା । ଦେଖି ପରି ବେଣି ଧରିଛନ୍ତି ସିନା, ଚେହେରା ଅବିକଳ······କାହା ପରି ? କାହା ପରି ? ଓଠରେ ଦୁଷ୍ଟାମି, ସିନେମା-ଷ୍ଟାର ଦାମିନୀ ? ଆଖିରେ କଳାମେଘ ଉପଭୋଗ, ପୁଷ୍ପା ? ନା, ପୁଷ୍ପା ନୁହେଁ, ବୋଧହୁଏ ମୋର ନୂଆ ଖୁଡ଼ୀ । ଯାହାହେଉ ମୁଁ ଭାବିଲି ଏଇ ଛବିଟିକୁ ନେବି, ନେବି ଓ ମୋର ଦେଖିଲା କାମ କରିବି ।

ଗୋକୁଳ ଆମର ଗୀତ ବୋଲେ । ହୋମ୍‌ୱାର୍କ୍ କରି ସାରିଲା ପରେ ଏବଂ ଯେତେବେଳେ ହାତରେ କାମ ନ ଥାଏ, ମାଆ ଆସିବାର ମତଲବରେ ନ ଥାଆନ୍ତି କି ତାଙ୍କୁ ପ୍ରାର୍ଥନା କରିବାର ସୁରୁଖର ପହଞ୍ଚ ନ ଥାଏ, ଗୋକୁଳ ଆମର ଗୀତ ଗୁଡ଼ାଏ—ମାଆଙ୍କୁ ଭଲ ପାଇବାର ଗୀତ । ପ୍ରତି ଶବ୍ଦ ସ୍ପଷ୍ଟ ହୋଇ ଶୁଭେ, ଅତି ସ୍ପଷ୍ଟ ଏବଂ ଖୋଲା, ତା'ର ସେଇ ଗୃହାଣି ପରି । କେଉଁଠି ଟିକିଏ ଖସେଇଦେବା, ଗଡ଼େଇଦେବା, କୁଞ୍ଚନ ଗୁଞ୍ଜନ ବିଳମ୍ବନ କିଛି ନାହିଁ । ଉଲଗ୍ନ ଉଚ୍ଚାରଣ । ନିର୍ଲଜ୍ଜ ଆରୋହଣ ଅବରୋହଣ । ଧାତ୍‌ତେରି ! ଏଇ ତୋର ଗୀତ ? ହେଲେ ପ୍ରଥମେ ତା'ର ଗୀତ ଶୁଣି ମୋର ମନେ ହେଲା ଏଇ ହେଉଛି ପୁରୁଷର ଗୀତ । ମାନେ ସତ-ପୁରୁଷ ଆଦାମ୍ କିମ୍ବା ତା'ରି ପରି ଜଣେ ଗୀତ ବୋଲିଲେ ଏମିତି ବୋଲନ୍ତା ପରା ! ମୋତେ ହସ ଲାଗିଲା, କିନ୍ତୁ ହସିବାର ଆଳରେ ସହିଲା ପରି, ଗୋଟାଏ ଘନୀଭୂତ ସ୍ଥୂଳ ଜ୍ୟୋତିର ସ୍ତୂପରେ ଦବିଗଲା ପରି ମନେ ହେଲା । ଆହୁରି ଆହୁରି ହେଉ ବୋଲି ଇଚ୍ଛା ହେଲା । ଯାହା ହେଉ ଦିନେ ସେ ଏମିତି ଗୀତ ବୋଲିଲାବେଳେ ମୁଁ ଭାବିଲି ଏଇ ହେଉଛି ସୁଯୋଗ । ଗୀତ ସରିଲା ବେଳକୁ ପଚାରିଲି—

"ଗୋକୁଳ, ତୋର ମାଆଙ୍କର ଏତେ ରୂପ ଏତେ ଗୁଣ; ତାଙ୍କର କ'ଣ ଛବିଟିଏ ନାହିଁ ?"

"ଅଛି, ମୋ ମନ ଭିତରେ ଅଛି ।"

"ଉହୁଁ, ମନରେ ଥିଲେ କଅଣ ହେବ, ଛବିଟିଏ ଥିଲେ କେତେ ସୁବିଧା, ମାନେ ଗୋଟାଏ ସାମାନ୍ୟକଥନ ଆଉଟ୍‌ଲାଇନ ମ୍ୟାପ୍······" ମୁଁ ଆଉ ବୁଝେଇ ପାରିଲି ନାହିଁ । ପ୍ରମାଦ ଗଣିଲି ।

ସେ କିଛି ନ କହିଲାରୁ ମୁଁ ପ୍ରତ୍ୟକ୍ଷ ଆକ୍ରମଣ ଚଳେଇଲି । କହିଲି—

"ମୋ ପାଖରେ ଛବି ଅଛି, ନେବୁ ?"

"ତୁ ଦେଉଛୁ ଯଦି ନେବି ।"

ମୁଁ ମୁହୂର୍ତ୍ତିକ ପାଇଁ ଆଶ୍ଚର୍ଯ୍ୟ ହୋଇ ତାକୁ ତା'ର ସସ୍ମିତ ବଦନକୁ ଚାହିଁଲି । ସେ ଏମିତି କହିଲା କାହିଁକି ? ମୁଁ ତା'ର କଏଣ କି, ସାଙ୍ଗ ନା ସୋଦର ? ଆଉ ହସିଲା ଯଦି ହେଁ ହେଁ ହୋଇ ହସିଲା ନାହିଁ କାହିଁକି ? ଉଦାର-ମଧୁର ହସ, ସତେ ଯେମିତି ସେ ମୋର ଭଲ ପାଇଁ, ମୋର ପାଇଁ—ବାପା କି ଗୁରୁ କି ସ୍ୱାମୀ ପୁରୁଷ ପରି—ତଳକୁ ଖସିଆସିଲା, ସେଇଠୁ ମୋତେ ଶିକ୍ଷା ଦେବ, ପାଠ ପଢ଼େଇବ ।

ମୁଁ ସେଇ ବନେଇ ଛବିକୁ ନେଇ ଆସି ତା' ହାତରେ ଧରେଇଦେଲି । ଆଉ କଏଣ କରିଥାଆନ୍ତି ?

ଭାବିଥିଲି ଗୋକୁଳ ମନିଷ ହେବ । ତା'ର ମାଆ ଅଗାଧ ସ୍ନେହ ଶୂନ୍ୟରୁ ବିଚ୍ୟୁତ ହୋଇ ମୋର ଦଆ ତରୁଣୀ, ତୁମ-ଆମ ନାରୀର ଓଠ, ଆଖି, ମୁହଁ, ବକ୍ଷ, କଅଁନରେ ବାନ୍ଧି ହୋଇଯିବେ । ଗୋକୁଳ ତାଙ୍କୁଇ ଧ୍ୟାନ କରିବାକୁ ଯାଇ ବାଗକୁ ଆସିବ । ଆମର ପରି ଅଳ୍ପ ବହୁତ ପ୍ରାର୍ଥନା କରି ମୁଣ୍ଡିଆଟିଏ ମାରି ଆପଣା କାମ କରିବ । ହଜିଯିବ ନାହିଁ । ମିଳେଇ ଯିବାର ଭୟ ରହିବ ନାହିଁ । ସେ ନଜେ ସେଦିନ କହି ନ ଥିଲା ··?

କିନ୍ତୁ ଏହାପରେ ସେ ମୋତେ କହାଣି ରଗେଇଲା । ଏମିତି ଅବେଳାରେ ଅଡଶସ୍ତ ଅନାବଶ୍ୟକ ଧ୍ୟାନ କରି ବସିଲା । ମୁଁ ଦେଖିଲି ତା'ର ଗୋରା ଦେହ ଝାଙ୍କର ଉଠୁଛି । ଦେଖିଲି ତାକୁ କେହି ରକ୍ଷା କରିପାରିବେ ନାହିଁ । ସେ ହଜିଯିବ, ମିଳେଇଯିବ, ମରିଯିବ, ମୁଁ କିଛି କରିପାରିବି ନାହିଁ ।

ଆପଣମାନେ କହିପାରନ୍ତି ଯେ ମୋର ବନ୍ଧୁମାନଙ୍କ ପରି ମୁଁ ତାକୁ ତା' ବାଟରେ ଛାଡ଼ି ଦେଇଥାଆନ୍ତି, ପାଗଳ କିମ୍ବା ଭଣ୍ଡ ବୋଲି ମନେ କରି ଆଡ଼େଇ ହୋଇଯାଇଥାଆନ୍ତି । ମୁଁ ସେମିତି କରିପାରିଲି ନାହିଁ, କାହିଁକି ନା ମୁଁ ଭାବିଲି ସେ ସାଧାରଣ-ପାଗଳ, ସାଧାରଣ ଭଣ୍ଡ ନୁହେଁ । ମୋର ଧୋବ ପନ୍ତାବାରେ ମେଞ୍ଚାଏ ନାଲି ପାନପିକ ପଡ଼ିଛି । ମୁଁ ତାକୁ ଧୋଇ ଦେବି, ଛିଣ୍ଡେଇ ଦେବି କିମ୍ବା ଇଏ ମୋର ଗୌରବ ଚିହ୍ନ ଦେଖେଇ ହେବ । ଧାଣିହାତ ବୁଲେଇ ଭୁଲିଯିବି କେମିତି ? ଗୋଟାଏ ଉଡ଼ନ୍ତା ଥାଳିଆ ମୋର ଅଗଣା ତୁଳସୀ ଚଉରା ଉପର ଦେଇ ଚାଲିଗଲା । ମୁଁ ତା'ର ଦୁଃସାହସ, ତା'ର କଥାଁର ମତଲବକୁ ଧରି ନ ପାରିଲେ ମୋର ଘର ଦୁଆରକୁ ନଜର ବୋଲି କହିବି କେମିତି ? ନିଜ ମନ୍ଦିରରେ

କିଏ ଗୋଟାଏ ମୋ ଦେହରେ ହାତ ପକେଇଲାଣି, ମୁଁ ତାକୁ ଭୂତ ବୋଲି ମାନିବି କିମ୍ବା ସ୍ୱପ୍ନପରି କୁଣ୍ଢେଇ ଧରିବି । ହେଲେଇ ଦେଇ ପାରିବି ? ବୁଝିପାରୁ ନାହାନ୍ତି ?

ନା, ଆପଣ ବୁଝିପାରିବେ ନାହିଁ । କାରଣ ଆପଣ ଗୋକୁଳକୁ ଦେଖି ନାହାନ୍ତି । ସେଇଲାଗି ଅଶାନ୍ତିକୁ କାଟିଦେବା ପାଇଁ ମୁଁ ତା' ଉପରେ ଯେମିତି ରାଗୁଥିଲି, ଆହୁରି ରାଗି ନ ପାରି ଘୃଣା କରୁଥିଲି, ଆହୁରି ଘୃଣା ନକରି ପାରି ନିଜ ଉପରେ ରାଗୁଥିଲି ଏବଂ ଅଧିକରୁ ଅଧିକ ଅଶାନ୍ତ ହେଉଥିଲି । ତା'ର କଳବଳ ଆପଣ ବୁଝିପାରିବେ ନାହିଁ ।

ବିଶ୍ୱାସ କରନ୍ତୁ, ମୁଁ ଭଗବାନଙ୍କୁ ଡାକୁଥିଲି କେମିତି ମାଟ୍ରିକ୍ ପରୀକ୍ଷା ସରିବ । ମୁଁ କଲେଜକୁ ଯିବି ଆଉ ସେ କୁଆଡ଼େ ବୋଲି କୁଆଡ଼େ ଯିବ । ମୁଁ ସ୍ଥିର କରିଥିଲି ଯେ ଯଦି ସେ କଲେଜ ଦୁଆର ମାଡ଼େ, ମୁଁ ଭିନ୍ନ ଜିଲ୍ଲା, ଭିନ୍ନ ପ୍ରଦେଶ, ଆବଶ୍ୟକ ହେଲେ ଭିନ୍ନ ଦେଶର କଲେଜରେ ନାଆଁ ଲେଖେଇବି । ମୋର ବାକି ଜୀବନରେ ତା'ର ଛାଇ ପଡ଼ିବ ନାହିଁ—ନାହିଁ—ନାହିଁ ।

କ୍ରମଶଃ ସେଇ ଅପେକ୍ଷିତ ବିଦାୟବାସର ପାଖେଇ ଆସିଲା । ମୁଁ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାଶ୍ କରି ରାଜଧାନୀର ପହିଲା ନମ୍ବର କଲେଜରେ ପଢ଼ିବା ପାଇଁ ବାହାରିଲି । ଗୋକୁଳ ସାଧାରଣ ପାଶ୍ କରି ପଛରେ ପଡ଼ିରହିଲା । ସଫେଇ ଦେଲା ଯେ ସେ ଆଉ ପଢ଼ିବାକୁ ଚାହେଁ ନାହିଁ, ଜୀବିକା ନିର୍ବାହ ପାଇଁ ଯେତିକି ଆବଶ୍ୟକ ସେତିକି ହୋଇଗଲା, ସେତିକିରେ ସେ ତା' ଗାଆଁରେ ବସି ପେଟ ପୋଷି ପାରିବ, ତା'ର ବାପା ବୋଉ ଭାଇ ବନ୍ଧୁ କୁଟୁମ୍ବ ଗ୍ରାମବାସୀ-ମାନଙ୍କୁ ଖୁସି କରିପାରିବ ।

ମୁଁ ଦିନ ଗଣିଲି । ମୋର ରାଗ, ଘୃଣା ଓ ଅଶାନ୍ତିକୁ ଆପୁଡ଼େଇ ଦେଲି । ନିଜକୁ କହିଲି ଯେ ଛିଣ୍ଡିଯିବ, ଏଇ ଅବାଞ୍ଛିତ ସମ୍ପର୍କ ସାରା ଜୀବନ ପାଇଁ ତୁଟିଯିବ, ଯେଉଁଦିନ ମୁଁ ଟ୍ରେନରେ ବସି ଏଠୁ ଚାଲିଯିବି । ଧୂଆଁ ଛାଡ଼ି ଦୂରରୁ ଦୂରକୁ ଚାଲିଯିବି, ଆଉ ସେ ପ୍ଲାଟଫର୍ମର ପଙ୍କ୍ ପଥର ବେଞ୍ଚ ପରି ପଡ଼ିରହିବ । ତା'ର ମାଆଙ୍କୁ ଧରି କାନ୍ଦୁଥିବ । ଧନ୍ୟବାଦ ।

ଯିବାଦିନ ସେ ଅନ୍ୟମାନଙ୍କ ସାଙ୍ଗରେ ପ୍ଲାଟଫର୍ମକୁ ଆସିଥିଲା । ମୁଁ ତା' ସାଙ୍ଗରେ ମଧ୍ୟ ହାତ ମିଳେଇଥିଲି । ଗାଡ଼ି ଛାଡ଼ିଲାବେଳେ ତା' ଆଡ଼କୁ ମଧ୍ୟ ଚାହିଁ ବିଦାୟ ପତାକା ହଲେଇ ଥିଲି, ଯାଉଛି ଯେତେବେଳେ କାହିଁକି ତାକୁ ଏଇ ସାମାନ୍ୟ ସୌଜନ୍ୟରୁ ବଞ୍ଚିତ କରିବି ?

ଧୂଆଁ ଗୁଡ଼ା ଦୂରରୁ ଦୂରକୁ ଚାଲିଗଲାବେଳେ ମୁଁ ତା' ଆଡ଼କୁ ଅନାଇ ନ ଥିଲି । କିନ୍ତୁ ମୋର ବନ୍ଧୁ ରମାକାନ୍ତ ସୁଧୀର ଓଗେର ମୋତେ କେଉଁଯାଏ ଅନାଇ ରହିଥିଲେ ମୁଁ ଜାଣିପାରିଲି ନାହିଁ । ମୁଁ ତର ସହୁନପାରିଲା ପରି ଭିତରକୁ ଆସି ସିଟ୍‌ରେ ବସିପଡ଼ିଲି । ଟ୍ରେନ୍ ସାଙ୍ଗରେ ପଡ଼ି ଧୂଆଁ ଗୁଡ଼ିଲା । ଆରମ୍ଭ !

ଭାବିଲି ଘନ ଘନ ଧୂଆଁ ଗୁଡ଼ା ଆରମ୍ଭ କରିବ । ସେ ମୋତେ କଣ ଦେଇଛି ନା ମୋ'ଠାରୁ କ'ଣ ନେଇଛି ଯେ ମୋର ତା' କଥା ମନେରହିବ ?

ମୁଁ ତାକୁ ପୂରାପୂରି ଭୁଲିଗଲି । ସେ ଖଣ୍ଡେ ଚିଠି ଦେଇଥିଲା । ମୁଁ ତାର ଉତ୍ତର ଦେଲି ନାହିଁ ।

କଲେଜ, ବିବାହ, ପରିବାର, ଚାକିରି ଉନ୍ନତିର ପାହାଚରେ ଉଠି ଉଠି ଗଲି । ସୁଖ କଲି । ଉଠିବା ପାଇଁ ପାଖ ଲୋକର କାନ୍ଧରେ ହାତ ପକେଇଲି, ବାଧ ହୋଇ ଜଣେ ଅଧେଙ୍କୁ ତଳକୁ ଠେଲିଦେଲି । ସୁଖର ସୁଆଦ ବଢ଼େଇବା ପାଇଁ ଅଭିନବ ଅବାଟରେ ପଶିଲି, ଜହ୍ନ ରାତିରେ ଶୁଖୁଆ ଖାଇବାର ଆନନ୍ଦ ଲୋଡ଼ିଲି, ଥୁଥୁ କଲି, ଧଇଁ ସଇଁ ହେଲି, ଉଠିଲି, ବଢ଼ିଲି, ଜମେଇଲି, ଧର୍ମ କଲି··· ଏବଂ ବେଳେବେଳେ ଭାବିଲି ଯେ ହେଲା ନାହିଁ, ଭାଗ ମାପ ଠିକ୍ ହେଲା ନାହିଁ । ସମ୍ଭବ ହେଲେ ଜୀବନର ଚିଠାକୁ ଚିରିଦେଇ ଆଉଥରେ ଲେଖନ୍ତି, ଆହୁରି ବଢ଼ିଆ ବନେଇଦେଇ ପାରନ୍ତି । କିନ୍ତୁ କସ୍ମିନ୍‌କାଳେ ମୋ ମନରେ ଆସି ନ ଥିଲା ଯେ ଏତେ କଷ୍ଟ ନ କରି ତଳେ ଘାସ ଉପରେ ଲମ୍ବି ଯାଇଥାଆନ୍ତି, କେବଳ ପେଟ ପୋଷି ଇତର ଶାଗୁଆ ଘାସ ଉପରେ ଲମ୍ବି ଯାଇଥାଆନ୍ତି ଓ ଧ୍ୟାନ କରୁଥାଆନ୍ତି, ଅଭାଗା ଅକର୍ମୀ ଗୋକୁଳମାନଙ୍କ ପରି ।

ହଁ, ଗୋକୁଳ ପିଲା ଦିନର ବନ୍ଧୁଟିଏ, ଭୁକ୍ତ ବର୍ଜିତ ପିଲାଳିଆମିର ଏକ ଉପଭୋଗ ପରି ମନେପଡ଼େ, ଯେତେବେଳେ ନିଜ ସାଙ୍ଗରେ କଉତୁକ କରିବାକୁ ଇଚ୍ଛା ହୁଏ—ଜାଣିଛ ବଡ଼ ସାହେବ, ତୁମେ ଆଠ ବର୍ଷ ଯାଏଁ ଲୁଚେଇ ଲୁଚେଇ ମାଆଠାରୁ ଦୁଧ ଖାଉଥିଲ, ତୁମର ସାଙ୍ଗକୁ (ସେ ଏଇକ୍ଷଣି କଲେଜ ପ୍ରିନସିପାଲ ହୋଇଛି) କହୁଥିଲ ଯେ ମାଆ ଦୁଧ କ୍ଷୀରଠାରୁ ଆହୁରି ମିଠାଲାଗେ ? ଜାଣିଛ ମିଷ୍ଟର ଡ୍ୟାଡ଼ ! ତୁମେ ଦିନେ ବିଶ୍ୱାସ କରୁଥିଲ ଯେ ପୁଅଝିଅ ଲଗାଲଗି ହୋଇ ଶୋଇଲେ ଗେହ୍ଲେଇ ହେଲେ ପିଲା ଜନ୍ମ ହୁଏ ? ମନେଅଛି, ଯେବେ ଘରପାଖ ବଜାର ଟୋକା ଶତ୍ରୁଘ୍ନ ଗଞ୍ଜାକୁକୁଡ଼ାଙ୍କ କାରବାରକୁ ଆଙ୍ଗୁଠି ଦେଖେଇ କହିଲା, ଆଜ୍ଞା ଦେଖନ୍ତୁ, ଏମିତି ହୁଏ, ଏଇଥିରୁ ଅଣ୍ଡା ହୁଏ, ପିଲା ହୁଏ, ସେତେବେଳେ ତୁମେ ଶତ୍ରୁଘ୍ନ ଭଳି ମୂର୍ଖ କେହି ନାହାନ୍ତି, ମଣିଷ ଏମିତି ପଶୁ ନୁହେଁ ଅସଜା

ନୁହେଁ ବୋଲି ଠୋ ଠୋ ହୋଇ ହସୁଥିଲ ? ମନେପଡ଼ୁଛି ମିଷ୍ଟର ଇଣ୍ଟେଲେକ୍‌ଚୁଅଲ୍, ପିଲାଦିନେ ଗୋକୁଳ ବୋଲି ଜଣେ ଥିଲା, ତୁମେ ତା' ଉପରେ ରାଗୁଥିଲ, ତାକୁ ଘୃଣା କରୁଥିଲ, କିନ୍ତୁ ଭାବୁଥିଲ (ଫ୍ରଏଡ୍‌ୀୟ ଅବଚେତନ ମାନସରେ ଭାବୁଥିଲ) ଯେ ତା' ପରି ସ୍ୱାସ୍ଥ୍ୟବାନ୍ ସତେଜ ସୁପୁରୁଷ ଆଉ କେହି ନାହାନ୍ତି ? ମନେ ପଡ଼େ···ହେଲେ ନିଜକୁ ଚେତେଇ ଦିଏ ଯେ ଦାମ୍ପତ୍ୟ ଶେଷରେ କିମ୍ବା କ୍ଲବ୍ ଘରେ ଯେତେକ ପିଲାଳିଆମିର ଗପ କରି ହେବ, ଉପସ୍ଥିତ ବାରମଜାରେ ତେରମଜା ଯୋଡ଼ି ଦେଇ ହେବ, କିନ୍ତୁ ଏଇ ଗୋକୁଳ ଉପାଖ୍ୟାନ କେବେହେଲେ କାହାକୁ କହିବାର ନୁହେଁ । ଯୁକ୍ତିବର୍ଜିତ ବସ୍ତୁତ ପିଲାଳିଆମିର ଅନନ୍ୟ ଉପଭୋଗ, ତେବେ ଅପର ବ୍ୟକ୍ତି କଥାଟାକୁ ପୂରାପୂରି ଧରି ପାରିବ ନାହିଁ । ହସିବା ସାଙ୍ଗେ ସାଙ୍ଗେ ମୋତେ ଲୁଚେଇ କରି ଟଳେଇ କରି ଦେଖିବ, ସତେକି ମୁଁ ଏବେ ମଧ୍ୟ ମୋର ପର୍ଦ୍ଦନାଳିଟି ଭିତରେ କେଉଁ ଖର୍ବ ଅସଭ୍ୟ ବସ୍ତୁକୁ ଆଶ୍ରା ଦେଇଛି ।

ମୋର ସମାଜରେ ଏଇ ଅଦ୍‌ଭୁଦ ଅପରୀକ୍ଷିତ ରସଗୋଲା ହୁଏତ ବୋମା ପାଲଟି ଯିବ, ଆଉ ମୋତେ ଧ୍ୱଂସ କରିଦେବ ।

ମୋର ଆଗ୍ରହ ନ ଥିବା ସତ୍ତ୍ୱେ ମୁଁ ଗୋକୁଳର ଜୀବନଯାତ୍ରା ସମ୍ପର୍କରେ ମୋର ବାଲ୍ୟବନ୍ଧୁମାନଙ୍କଠାରୁ କାଁ ଭାଁ ଶୁଣିବାକୁ ପାଇଲି । ଶୁଣିଥିଲି ଯେ ସେ ବାହା ହୋଇନାହିଁ, ଗାଁ ସ୍କୁଲରେ ମାଷ୍ଟର ହୋଇଛି ଓ ଗ୍ରାମବାସୀମାନଙ୍କର ମୁଖିଆ ହୋଇଛି । ପରେ ବୁଝିଲି ଯେ ମୁଖିଆ ଫୁଖିଆ କିଛି ନୁହେଁ, ସେ କୌଣସି ଦଳରେ ମିଶି ନାହିଁ, ହେଲେ ତାକୁ ସେ ଅଞ୍ଚଳର ଲୋକେ ସମସ୍ତେ ମାନନ୍ତି, ଭଲ ପାଆନ୍ତି । କେମିତି ଭଲ ପାଆନ୍ତି କାହିଁକି ଭଲ ପାଆନ୍ତି ବୋଲି ପଚାରେ ନାହିଁ । ଧରିନିଏ ଯେ ତା' ପରି ନିରୀହ ନିର୍ବୁଦ୍ଧି ଲୋକକୁ ଭଲ ନ ପାଇବାର କୌଣସି କାରଣ ନାହିଁ । ଯେ ତାର ଅଧେ ସମୟ ତା'ର କେଉଁ ମାଆକୁ ବସି ଧ୍ୟାନ କରୁଥିବ, ସେ କାହାକୁ ରଗେଇବ କାହିଁକି ? ଅନ୍ୟମାନେ କଣ ମୋ ପରି ହୋଇଛନ୍ତି, ମାନେ ମୁଁ ପିଲାଦିନେ ଯେମିତି ଥିଲି ? ମନରେ ଗୋଟାଏ ଅବାନ୍ତର କୌତୂହଳ ଉଙ୍କି ମାରି ଖୋଲିଯାଏ, ମୁଁ ତାକୁ ପ୍ରଶ୍ରୟ ଦିଏ ନାହିଁ—

ସେ କଣ ସେଇ ମାଆଙ୍କର ଛବିକୁ ଧ୍ୟାନ କରୁଛି, ମୁଁ ଯେଉଁଟିକୁ ଆଣି ଦେଇଥିଲି ?

କାର୍ଯ୍ୟ ବ୍ୟପଦେଶରେ ତା' ଗାଆଁକୁ ଯିବାର ସୁଯୋଗ ପୂର୍ବରୁ କେତେଥର ଆସିଥିଲା, କିନ୍ତୁ ମୁଁ ଯାଇନଥିଲି । ସେଠିକି ଗଲେ ତା' ସାଙ୍ଗରେ ଦେଖା ନ କରିବା ଅଶୋଭନୀୟ ହେବ; ଅଥଚ ଦେଖା କଲେ କଣ କହିବି ? ସେ ମୋର

କିନ୍ତୁ ନୁହେଁ ସେ କଥା ଛାଡ଼ନ୍ତୁ, କିନ୍ତୁ ସମ୍ପର୍କର ସୂତାଖିଅଟିଏ ନ ଥିଲେ ତା’ ଘରେ ବସି ମୋର ମୂଲ୍ୟବାନ ସମୟ ନଷ୍ଟ କରିବି କାହିଁକି ? ସେ ସିନା ସମୟରେ ମିଶିଯାଇଛି, ମୁଁ ମୋର ସମୟକୁ ଛୁଟି ଦେଇପାରିବି କେମିତି ?

ସଂକୋଚର ପ୍ରଶ୍ନ ଉଠୁନାହିଁ । ତେଇଶ ବର୍ଷ ପରେ ମୁଁ ଜାଣିଶୁଣି ତା’ ଗାଆଁକୁ ତାକୁ ଦେଖିବି ବୋଲି ଗଲି । ଦେଖିବି, ହୁଏତ କୁଣ୍ଢାକୁଣ୍ଢି ହେବି । ଏତେଦିନ ପରେ ପିଲାଦିନର ଯେ କୌଣସି "ସାଙ୍ଗ" ସହିତ ଭେଟ ହେଲେ ଯେମିତି କରିବା କଥା । ସେଇଠୁ ତା’ର ଭକ୍ତପଣକୁ ନେଇ ଲଘୁ ପରିହାସ କରିବି, ନୂଆ ସରକାରଙ୍କ ଗ୍ରାମ ଉନ୍ନୟନ ଯୋଜନା ସଂପର୍କରେ ପଦେ ଦି’ପଦ ଝାଡ଼ିଦେବି । ଦୁନିଆ କଥା କହିବି, ହୋ ହୋ ହୋଇ ହସିବି । ଦେଖେଇ ଦେବି ଯେ ସଂକୋଚର ପ୍ରଶ୍ନ ଉଠୁନାହିଁ । ଇଚ୍ଛାକଲେ ପୂର୍ବରୁ ଅନେକ ଥର ଯାଇପାରିଥାଆନ୍ତି ।

(ହେଇ ମାଆଙ୍କ ଛବି, ଯେଉଁଟିକୁ ମୁଁ ଆଣି ଦେଇଥିଲି, ସେ କଣ ଆଜିଯାଏ ଥିବ ? ସିମ୍ପି ମାରି ଯାଇନଥିବ, ଉଇମାନେ ତା’କୁ ଗୋଡ଼ରୁ ମୁଣ୍ଡଯାଏଁ ଖାଇଯାଇ ନଥିବେ ? ସାହିର ପିଲାଏ ତା’ର ଫଟା କାଚ ଭିତରେ କାଳି ଢାଳି ତାକୁ ନଷ୍ଟ କରିଦେଇ ନଥିବେ ? )

ସତକୁ ସତ ପ୍ରଥମ ଦେଖାରେ ସେ ମୋତେ କୁଣ୍ଢେଇପକାଇଲା । ମୁଁ ମଧ୍ୟ ତାକୁ କୁଣ୍ଢେଇ ଧରିଲି । ଏମିତି ହେବାର କଥା, ହେଉ ।

ତେବେ ସେ କ’ଣ ଖଣ୍ଡେ କାମିଜ, ଅନ୍ତତଃ ଗେଞ୍ଜି ଦେହରେ ଗଳେଇ ଆସିପାରି ନଥାଆନ୍ତା ?

ମୁଁ ନିଜକୁ ବଞ୍ଚେଇ ରଖିଲି, କାଳେ ପୁଣି ସେ ମୋତେ ତା’ର ଖୋଲା ଦେହରେ ମିଶେଇବାକୁ ଚେଷ୍ଟା କରିବ । ଅବଶ୍ୟ ମୁଁ ଲକ୍ଷ୍ୟ କଲି ଯେ ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ତା’ର ମୁଣ୍ଡ ଚନ୍ଦା ହୋଇଗଲାଣି, ମୋର ମୁଣ୍ଡବାଳ ଯେମିତି ଧଳା ହୋଇଆସିଲାଣି, କିନ୍ତୁ ଦେହର ଗୋରାପଣ କଳାହେଉଛି ଏବଂ ତା’ର ମୁହଁର ଚେହେରାକୁ ଦେଖିଲି । କଣ ଅଛି ସେଥିରେ ?

କଣ ଅଛି ସେଥିରେ ? ଯେ ତା’ ଜୀବନରେ କିଛି କରିପାରେ ନାହିଁ, ଅଧେ ସମୟ ତା’ର କେଉଁ ମାଆକୁ ବସି ଧ୍ୟାନ କରୁଥିବ, ତା ମୁହଁର ଚେହେରାରେ

କଣ ଥାଆନ୍ତା ? କିଛି ନାହିଁର ପ୍ରଶାନ୍ତି, ପ୍ରଶାନ୍ତିର କିଛି ନାହିଁ ·····ଆଉ କଣ ଆଶା କରୁଥିଲି ?

ମୋତେ କେଜାଣି କାହିଁକି ଖାଲି ଖାଲି ଲାଗିଲା, ସତେକି ସେଇ ମାଆର ଛବି, ଯାହାକୁ ମୁଁ ଆଣି ଦେଇଥିଲି, ସତରେ ବୁଡି ଯାଇଛି । ବୁଡି ଯାଇଛି ଭଲ ହୋଇଛି ।

କେମିତି ଶୀଘ୍ର ଏଣୁ ତେଣୁ କଥାବାର୍ତ୍ତା କରି କପେ ଚା’ ଖାଇ ଫେରିଯିବି ବୋଲି ବ୍ୟସ୍ତ ହେଲି । ସେ ତା’ର ସ୍କୁଲ, ତା’ର ଫୁଲ ବଗିଚା, ନୂଆ ବ-ଡ଼-ଓ ତାକୁ କେତେ କଲଚର ଫୁଲର ମଞ୍ଜି ଦେଇଛନ୍ତି, ଚତୁର୍ଥ ଶ୍ରେଣୀରେ ପଢୁଥିବା କେଉଁ ମଉଳ ମୁହାଁ ଗୋବରା ତାକୁ ତା’ ଘର କାମରେ ସାହାଯ୍ୟ କରେ—ଏମିତି କେତେ କଣ ଗପିଗଲା । ମୁଁ ଠିକେ ଠିକେ ମୋ କଥା କହିଲି । କିନ୍ତୁ ବାରମ୍ବାର ହାତ ଘଡ଼ି ଦେଖିଲି, ଉଠି ପଳେଇଯିବାକୁ ଚାହିଁଲି । ସବୁ ବୁଡି ଯାଇଛି । ଭଲ ହୋଇଛି ।

ମୋର ସେତିକିବେଳେ ଉଠି ଆସିବା ଉଚିତ ହୋଇଥାଆନ୍ତା । ଉଠି ପାରିଲି ନାହିଁ । କାହିଁକିନା ସେ ମୋତେ ପୁରୁଣା ପରିଚିତ କଣ୍ଠରେ ବାବୁଲାଇ ବୋଲି ଡାକିଲା । କହିଲା···ବାବୁଲାଇ ଦେଖିବୁ ?

ଭିତର ଘରକୁ ଡାକିନେଲା ଆଉ ମୋତେ ଦେଖିବାକୁ କହିଲା । ଖଟୁଲିରେ ଥୁଆ ହୋଇଛି । ସେଇ ଛବି, ସେଇ ମାଆ-ମାଇକିନିଆ ଛବି ଯାହାକୁ ମୁଁ ଆଣି ଦେଇଥିଲି । ତାକୁ ଉଇ ଖାଇଯାଇନାହିଁ, ତାର କିଛି ନଷ୍ଟ ହୋଇନାହିଁ···ସେଇ ଦୁଷ୍ଟ ହସ, ସେଇ ମସ୍‌ଗୁଲିଆ ଗୃହାଣୀ ।

ମୋର ଗୁଡ ଭିତରେ ଅପ୍‌କିନ କଣ ଖସିଗଲା । ମୁହୂର୍ତ୍ତିର ଭଗ୍ନାଂଶରେ ମୋର ଇଚ୍ଛା ହେଲା ମୁଁ ଆନନ୍ଦରେ ତା’ର ଫୁଙ୍ଗୁଲା ଦେହକୁ ଧରି ପିଟିବି । ପ୍ରାଣଭରି ପିଟିବି ।

ଗୋକୁଳର ଦୋଷ । ସେଇ ମୋତେ ସମୟ ଦେଲା ନାହିଁ । ଦୁର୍ବଳ ମୁହୂର୍ତ୍ତିକୁ ପୋଛି ଲଭେଇ ଦେବା ପୂର୍ବରୁ ସେ ମାଆଙ୍କ ପାଇଁ ଗୀତ ଆରମ୍ଭ କରିଦେଲା । ଆଖିବୁଜି ଗୀତ ଗାଇଲା, ଆଖି ଖୋଲି ଚାହିଁଲା, ହସିଲା, ଗୀତ ଗାଇଲା, ତଳି ତଳି ଗୀତ ଗାଇଲା, ଆଖି ବୁଜି ଆଣିଲା···

ସେଇଠୁ ମୁଁ ଦେଖିଲି, ଯାହା କେବେହେଲେ ଦେଖିବି ବୋଲି ଖବର ନ ଥିଲି । ଗୋକୁଳ କାନ୍ଦୁଛି ।

କାହିଁକି ? କାହିଁକି ?? ସୁନ୍ଦର ସୁପୁରୁଷ ଗୋକୁଳ କାନ୍ଦବ ନାହିଁ, କାନ୍ଦବା କଥା ନୁହେଁ । ସେ ପାଇଛୁ । ମୁଁ ମାଆଙ୍କ ଆଡ଼କୁ କଟମଟ କରି ଅନେଇଲି ।

ଅନେଇଲି ଆଉ ଦେଖିଲି ପାପିନୀ ମାଆ ଦୁଷ୍ଟ ଓଠ ମସ୍‌ଗୁଲିଆ ଗୃହାଣୀରେ ହସୁଛନ୍ତି । ଗୋକୁଳକୁ କାନ୍ଦବାକୁ ହେବ । କାହିଁକନା ସେ ମୋତେ ଆଉ ଆମର ପାପତାପ ଅପୂରଣକୁ ସୁଧୁରେଇ ପାରିବ ନାହିଁ । ସୁଧୁରେଇ ପାରିବ ନାହିଁ , ହେଲେ ଛାଡ଼ିପାରିବ ନାହିଁ । ଏଇ ମିଛ ପାଇଁ, ମାୟା ପାଇଁ, ପ୍ରକୃତ ପାଇଁ କାନ୍ଦୁଥିବ । କାନ୍ଦଲେ କାନ୍ଦବ, ମୁଁ କଅଣ କରିବ ? ସେ ମୋର କଅଣ କି ?

ମୋତେ ଭୟ ଲାଗୁଛି ଯେ, ସେ ମୋ ଆଗରୁ ମୁକ୍ତ ପାଇ ଚାଲିଯିବ, ଆଉ ସେଇ ମାଆ-ମାଇକିନିଆ ଛବିକୁ ମୋ ପାଇଁ ଛାଡ଼ିଦେଇ ଯିବ ।



# କୁଆପଥର

ଆକାଶରେ ବାଜା ବାଜଣା ନୃତ୍ୟ ସଂଗୀତ ··ବର୍ଷାର ପରିବେଶ ଜମି ଆସିଲା ବେଳକୁ କୁଆପଥର ମାଡ଼ ବସିବ ବୋଲି କିଏ ଜାଣିଥିଲା ?

ତାଲଭଙ୍ଗ କରି ସେମାନେ ଯାହାକୁ ଯାହାରେ ତାକୁ ପିଟିବାକୁ ଲାଗିଲେ । ଧୂମ୍ ଧଡ଼ାସ, ଆଖି ନାହିଁ କାନ ନାହିଁ; କାଛ କବାଟ କାଚ ଗଛ ବୁରୁଜ କିଛି ବାକି ରହିଲା ନାହିଁ । ଏପରିକି ସାନ କୁଆପଥରଟିଏ ଟ୍ରେଳା ଫାଙ୍କ ଦେଇ ସଞ୍ଚିତାର ଖୋଲା ନୋଟ ବହି ଉପରେ ବସିପଡ଼ି ସଞ୍ଚିତାକୁ ଜୁଳୁଜୁଳୁ ହୋଇ ଅନେଇଲା ।···କ'ଣ କରିବୁ ? ଗ୍ରହୁଁ ଗ୍ରହୁଁ ମିଳେଇପିବୁ, ମରିଯିବୁ ତୁଚ୍ଛାକୁ । ଦେହର ପାଣି ଟିକିଏ ଛାଡ଼ିଦେଇ ଯିବୁ, ମୋର ସହସ୍ରତମ ଅଧାପଂଡରିଆ ଆର୍ଟ ମାର୍କଡ଼ାମିକୁ ଲେପି ଦେଇ ଗ୍ଲଲିଯିବୁ ଯିନା !

ଯାହାହେଉ ଦୁର୍ଦ୍ଦିନ୍‌ରେ ବ୍ୟତକ୍ରମ । ଏଇସ୍ଥାକୁ ଆନନ୍ଦ କହିଲେ କୁହ । ସଞ୍ଚିତା ଆନନ୍ଦର ନିଷ୍ଠୁରତାକୁ ନଠେଇ ମରୁଥିବା କୁଆପଥରକୁ ଗ୍ରହିଁ ରହିଲା । ଭାବିଲା ଦଶବର୍ଷ ତଳେ ବାପା ବୋଉଙ୍କ ଫଯାରରେ ସେ ଅନ୍ୟମାନଙ୍କଠାରୁ ଆହୁରି ଅଧିକ କୁଟୁଳି ଖାଇ କୁଆପଥରଟିକୁ ଟପ୍‌କିନା ପାଟିରେ ପକେଇ ଦେଇଥାନ୍ତା । ହିଁଃ ! ପାଟିରେ ପକେଇଥିଲେ ସେଇ ଅପର ବସ୍ତୁର କଟାପଟ ହୋଇଥାନ୍ତା । ଏଇକ୍ଷଣି ସେ ମରୁଛି, ମୁଁ ଦେଖୁଛି । ଆକାଶ ପୃଥିବୀ ବାଉଲା ଧରିଛି, ମୁଁ ଦେଖୁଛି । ସେମାନଙ୍କର, ସାଙ୍ଗମାନଙ୍କର, ଅପାର ସଂସାରକୁ ଦେଖୁଛି । ମୁରକି ମୁରକି ହସୁଛି । ଏଇ ହେଉଛି ଭଗବାନପଣିଆ । ଅସଲ ମଜା ।

ଆରେ ଅପାର କ'ଣ ହେଲା ? ଅପା କାନ୍ଦୁଛି ନା କଅଣ ?

ହସିବା କାନ୍ଦିବାର ସୀମାରେଖାରେ ଆମ ଅପାକୁ କେହି ବଳେଇ ଯିବନାହିଁ । ଆବେଗରେ ଅଧୀର ହୋଇ ଲେଟିଯାଏ ନାହିଁ, ବିଷ୍ମୃତି ଆବେଗ ସାଙ୍ଗରେ ଲଢ଼େଇ କରୁଛି ବୋଲି ଜଣେଇଦିଏ । ଅତଥି ଭଦ୍ରଲୋକମାନଙ୍କ ଗହଣରେ ପାଟିରେ ହାତ ଦେଇ ମୁହଁ ତଳକୁ କରି ହସେ, କାହା ଆଖିରେ ନ ପଡ଼ିବ ନାହିଁ । ଓଠ ଥରେଇ ଆଖିପତା ନଚେଇ କାନ୍ଦିବ ନାହିଁ, କାନ୍ଦିବ ନାହିଁ

ବୋଲି ଧେଂଡୁରା ପିଟେ । ମନୋଜ ଭାଇ ମଧ୍ୟ ଧରି ନେଇଛନ୍ତି ଯେ ତାଙ୍କ ସ୍ତ୍ରୀଟି ଏମିତି, ସବୁଦୋଷ ଗୁଣ ଭିତରେ ଏଇ ଆଳୁ ଦୋଷକୁ ସ୍ୱୀକାର କରି ତାକୁ ଭଲ ପାଇବାକୁ ହେବ । ମନୋଜ ଭାଇ ତାକୁ ପ୍ରକୃତରେ ଭଲ ପାଆନ୍ତି··· ।

ନାକକାନ୍ଦୁରା ଉହୁଁ ଉହୁଁ ଅମାନିଆ କୁଆପଥରକୁ ମନା କଲା ପରି, ପ୍ରତିବାଦ ସ୍ୱର ଉଙ୍କେଇ ହାରିଗଲା ପରି ଶବ୍ଦ ପାଖେଇ ଆସୁଛି । ଫଚଡା ପଛକୁ ଅନେଇ ଦେଖିଲା ଅପା ତାରି ଆଡ଼କୁ ଆସୁଛି, ଝରକା ବାଟେ ରାତି ଆକାଶକୁ ଅନେଇ ହାତ ହଲଉଛି, ବିଚିତ୍ର ଧ୍ୱନି ଶୁଣାଯାଉଛି ।

"କଲେ, କଅଣ ହେଲା !"

"କିଛି ନାହିଁ । ଏତେ ରାତିଟାରେ କୁଆପଥର କେଉଁଠୁ ଆସିଲା ?"

ଫଚଡା ହସି ପକାଇଲା । "କୁଆପଥର ରାତିରେ ଆସିବ ନାହିଁ ଦିନରେ ଆସିବ ବୋଲି କ'ଣ ଲେଖା ହୋଇଛି ? ନା' ବର୍ଷା ସବୁଥର ତୋରି ପାଇଁ ଝୁମୁରୁ ଝୁମୁରୁ ଝୁପୁରୁ ଝୁପୁରୁ ହେଉଥିବ, କେବେହେଲେ ଅଭଦ୍ରଙ୍କ ପରି—"

"ଧ୍ୟାତ୍ ମୁଁ କ'ଣ ସେ କଥା କହୁଛି ?" ସସ୍ମିତା ସାନ ଭଉଣୀର ହସରେ ହସିଲା । "ସହଜେ ତାଙ୍କର ଫେରିବାକୁ ଡେରି ହେଲାଣି, ଯଦି ରାସ୍ତାରେ କେଉଁଠି ଅଟକି ଯାଇଥିବେ ।"

"ଲଟକି ଯାଇଥିବେ ?" ଫଚଡା ପରିହାସ ଛଳରେ ଅପାର ଉଦ୍‌ବେଗକୁ ଉଡ଼େଇ ଦେଲା । ତା ସାଙ୍ଗରେ ଅପାର ଏଇ ଅତିପ୍ରେମର ବଡ଼ିମାକୁ ମଧ୍ୟ ଉଡ଼େଇ ଦେବାକୁ ଚାହିଁଲା । ଏମାନେ କ'ଣ ଭାବନ୍ତି ଯେ ଆପଣା ଲୋକଟିକୁ ଏକୁଟିଆ ବାଟ ଚଲେଇ ନ ଦେବା, ପାଣି ପବନ କୁଆପଥର (ପାପ କାମନାର) ଫଘାତରୁ ବଞ୍ଚେଇ ରଖିବା ହେଉଛି ପ୍ରେମର କାଇଦା ? ମନୋଜ ଭାଇ ଭଲ ମଣିଷ । ହୁଏତ କେଉଁ ରେସ୍ତୋରାଁ ଭିତରେ ପଶିଯାଇ ଚା' ଖାଉଥିବେ, କୁଆପଥର ଅଦଉତି କେତେବେଳେ ସରିବ, ଟ୍ୟାକ୍‌ସି ଧରି ଘରକୁ ଫେରିବେ ବୋଲି ଅପେକ୍ଷା କରିଥିବେ । ଆଉ ଏଣେ ତାଙ୍କ ସ୍ତ୍ରୀଙ୍କର ଅଧା ମରଣ । ଫଚଡା ଆତୁର ଢ'ପଦ ଯୋଡ଼ି ଦେଇ କହିଲା, "ଅଧାନରେ ଲଖିଯାଇ ନ ଥିବେ, ବିଶ୍ୱାସ କର । ଯଥା ସମୟରେ ଘରକୁ ଫେରିବେ । ଏତେ ଦରଦ ହେଉଛି ଯଦି ଏଇଥିରୁ ଗୋଟିଏ ନେ, ଟପ୍ କରି ପାଟିରେ ପକେଇ ଦେ ।" ଫଚଡା ଅନ୍ୟତମ ବାଟବଣା କୁନି ବରଫଟିଏ ଅପା ହାତକୁ ବଢ଼େଇ ଦେଲା ।

ସସ୍ମିତା ଚପଲା ସାନ ଭଉଣୀର ମୂହଁ ବନ୍ଦ କରିଦେବା ପାଇଁ ଚେଷ୍ଟା କଲନାହିଁ । ସେ ଜାଣେ ସେ ପୃଥିବୀରେ କାହାକୁ ଦବେଇ ପାରିବ ନାହିଁ । କିଂ ସୁକନ୍ୟାମାନେ ମଧ୍ୟ ତା ଉପରେ ହାକମି କରନ୍ତି । ଆଜିକାଲି ଅବଲାମାନଙ୍କର ସଂଖ୍ୟା ଯେତେ କମି ଆସିଲେ ମଧ୍ୟ ସେ ତାଙ୍କର ଭିତରୁ ଜଣେ । ବାପା କହୁଥିଲେ ପରୀ—ମିତା ଆମର ଏଇ ପୃଥିବୀ ପାଇଁ ଅନୁଭଲ, ଅଯୋଗ୍ୟା । ଭଗବାନ କରନ୍ତୁ ତା ପାଇଁ ସେମିତିକା ବରଟିଏ ମିଳୁ ଯେ ତାକୁ ସାହାସ ଦେଇ ପାରିବ, ଶକ୍ତର ଡାଲ ତରବାରି ଯୋଗେଇ ଦେଇ ପାରିବ । ହଁ, ସେ ମୋତେ ସାହସ ଦେଇଛନ୍ତି, ତାଙ୍କ ବିଶାଳ ଛାତି ଉପରେ ଶୁଆଇ ଚଞ୍ଚି ଭୂତମାନଙ୍କ ସାଙ୍ଗରେ ଲଢ଼ିବା ପାଇଁ ଦମ୍ଭ ଦେଇଛନ୍ତି । ତା ବୋଲି ମୁଁ କ'ଣ ତାଙ୍କୁ ଆବୁରି ପାରିବ ନାହିଁ ? ତାଙ୍କ ଛାତିକୁ ମୋ କୁଣ୍ଢ ପାଇବ ନାହିଁ ?

ସେ ଓଦା ହୋଇ କୁଆପଥର ମାଡ଼ ଖାଇ ଘରକୁ ଫେରିବେ ତାଙ୍କୁ କଷ୍ଟ ହେବ, ସେଥିପାଇଁ ବ୍ୟସ୍ତ ହେବାର କଥା । କିନ୍ତୁ କେବଳ ତା ନୁହେଁ । ଜେ କୌଣସି କାରଣରୁ ବିରକ୍ତ ହୋଇ ଘରକୁ ଫେରିଲେ ସେ ମୋ ଠାରୁ ଦୂରେଇ ଯାନ୍ତି । ମୁଁ ତାଙ୍କ ମନ ଭିତରେ ଠେଲା ପେଲା ହେଉଥିବା ଦେବୀ ଦାନବୀ କାହାରିକୁ ଧରିପାରେ ନାହିଁ । ସେ ମୋ ଠାରୁ ଦୂରେଇ ଯାନ୍ତି ।······

ସସ୍ମିତା ବରଫକୁ ହାତରେ ଧରି ତରଳେଇ ଦେଲା । ସତେକି ଯାହା ମିଳିଲା ତାକୁ ବରିନେବାକୁ ପଡ଼ିବ । ସଚିତାର ଟେବୁଲ ପାଖରେ ଛିଡ଼ା ହୋଇ ହସକାନ୍ଦ ସମ୍ଭାଳି କରି ସାନ ଭଉଣୀ ଉପରେ ରାଗିବାକୁ ଚାହିଁଲା । ମୁଁ ତୋର ମୂନଆଁ କଥାର ଜବାବ ଦେଇ ପାରିବ ନାହିଁ । କିନ୍ତୁ ମୋର ଭିତରି ବ୍ୟଥା କେଉଁଥିପାଇଁ ତୁ କାହିଁକି ବୁଝି ପାରୁନୁ ନାହିଁ ? ତୁ ଏତେ ପାଠ ପଢ଼ିଛୁ ପରୀ, ଅବୁଝିଏ କାହା ସାଙ୍ଗରେ ଦେଖାହେଲା ପରେ ତୁ ତା'ର ଚରିତ୍ରର ଅନ୍ତ ବୁଜୁଳି କାଢ଼ି ଦେଖେଇ ଦେଉ, ଆଉ ତୋ ନିଜ ଭଉଣୀର ମନଗହାରକୁ ଛୁଇଁ ପାରିଲୁ ନାହିଁ ? କାହିଁକି--ପାରିଲୁ ନାହିଁ ?

ତୁ କ'ଣ ମୋର ପ୍ରଥମ ପୁରୁଷ ବାପାଙ୍କର ଝିଅ ନୁହଁ ?

ଛାଡ଼, ତୁ କିଛି ନୁହେଁ ଏଇ ଭାବରେ ସସ୍ମିତା ନୀରବରେ ଫେରିଗଲା । ସଚିତା ଓଠ ଚିପି ଅପା ପ୍ରତି ଦୟା ଦେଖାଇଲା । ବନିତା ଲତା ଲବଣୀପିତୁଳା ମାନଙ୍କୁ ମୋର ବଳ ନାହିଁ ।

କିନ୍ତୁ ପର ମୁହୂର୍ତ୍ତରେ ସଚିତା ଝରକା ବନ୍ଦକରିଦେଲା । ବନ୍ଦ ଦେବା ପୂର୍ବରୁ ବିଜୁଳି ଝଲକରେ ଦିଶି ଯାଉଥିବା ଅପର ଘର ପରିବାରମାନଙ୍କୁ ମନେ ମନେ କହିଲା—ତୁମେମାନେ ସାଧାରଣ ସୁଖରେ ସଡ଼ୁଥାଅ, ଆମେ

ଦୁଇ ଭଉଣୀ ଭିନ୍ନ ଧାତୁରେ ଗଢ଼ା । କୁଆପଥରମାନେ, ତୁମେ ଯେଉଁ ଦୃଶ୍ୟ ଦେଖେଇଲ ସେଥିପାଇଁ ଧନ୍ୟବାଦ । ବର୍ତ୍ତମାନ ମୋର କାମ ହେଲା ବଡ଼ ଭଉଣୀକୁ ଆଶ୍ୱାସନା ଦେବା । ଥାପୁଡ଼େଇ କାନ୍ଦନାହିଁ ବୋଲି କହିବା । ଇଏ କ ଓଲଟା କଥା ବୋଲି କୁହନାହିଁ । ଆମ ଫ୍ୟାମିଲିରେ ଚଳେ । ବାପା ବୋଉ ବଞ୍ଚିଥିଲା-ବେଳେ କରିବାକୁ ପଡ଼ୁଥିଲା । (ଜିତାଲୋ ଆଜି ପଢ଼ା ସେତିକ ଥାଉ, ଗଲୁ ଟିକିଏ ଅପାକୁ ବୁଝେଇ ଦେଇ ଆସିବୁ । ତୋ ଛଡ଼ା ଆଉ କିଏ ପାରିବ କହିଲୁ ?) । ବାପା ବୋଉ ନାହାନ୍ତି । ଅପା ବାହା ସାହା ହୋଇ ନିଜଘର କଲାଣି, ତା' ବୋଲି କ'ଣ ସୂର୍ଯ୍ୟପଶ୍ଚିମରେ ଉଇଁବେ ?

ବାପା ବୋଉ, କାହାକୁ ସାବାସ୍ ଦେବ କହିଲ ? ସଞ୍ଚିତା ନାଁକୁ ଶ୍ରେଷ୍ଠ କରି ଚିତା ବୋଲି ନ ଡାକ ବୁଦ୍ଧିମାନର କାର୍ଯ୍ୟ କରିଛ । ମୁଁ ଜଳଉଠି ରଙ୍ଗ ଚହଟେଇ ପାରିବ ନାହିଁ । ନିଜ ଭିତରେ କୁହୁଳୁଥିବ ।

ଅପା ଲୋ ! ମୁଁ ତୋତେ ଦୋଷ ଦେଉନାହିଁ । ବଡ଼ ଭଉଣୀର ବଡ଼ଦୁଃଖ ହେବନାହିଁ କେମିତି ? ତା' ଛଡ଼ା ଏଇକ୍ଷଣି ତୋର ବିକଳ ଅବସ୍ଥା, କାରଣ ତୁ ମା ହେବାକୁ ଯାଉଛୁ । ତୋର ଆଗାମୀ ସନ୍ତାନ ପ୍ରତି ମୋର କର୍ତ୍ତବ୍ୟ ଅଛି । ମାନବିକତା ।

ସଂଚିତା ଉଠିଯାଇ ବିଛଣାରେ ମୁହଁ ମାଡ଼ି ପଡ଼ିଥିବା ଅପା ପାଖରେ ଓଲଟି ଗଲା । ଅପାର ହାତକୁ ଧରି କହିଲା "ଛିଃ ମିଛୁଟାରେ କାହିଁକି ଏମିତି ବ୍ୟସ୍ତ ହେଉଛୁ କହିଲୁ ? କୁଆପଥର ଝଡ଼ ସରିଆସିଲାଣି । ଅଧଘଣ୍ଟା ଭିତରେ ମନୋଜ ଭାଇ ଫେରି ଆସିବେ । ଆସିଲେ ଦୁଇଜଣଯାକ ମିଶିଯାଇ ତାଙ୍କୁ ପରସ୍ପେ ଶୋଧିବା — କ'ଣ କହୁଛୁ ? ଏତେ ରାତିଯାଏ ବାରବୁଲା ହୋଇ ବୁଲୁଛି, ଘରେ ଗର୍ଭବତୀ ସ୍ତ୍ରୀ, ଇଏ କ'ଣ ଖେଳଘଡ଼ି ପଡ଼ିଛି ? ସମ୍ପିତା ଉତ୍ତର ନ ଦେଇ ପାଖକୁ ଲାଗି ଆସିଲା ।

କେତେ ସମୟ କଟିଗଲା । ଅପାର ଦେହଲଗା ସାନ୍ନିଧ ସଂଚିତାକୁ ଆହୁରି ଆହୁରି ଭଲ ଲାଗିଲା । ସଞ୍ଚିତାର ମନେ ହେଲା ସେ ମିଶିଯାଉନାହିଁ, ମିଳେଇ ଯାଉଛି । ଧଳା ବଉଦ ଆଉ ଖଣ୍ଡେ ଧଳା ବଉଦ ସାଙ୍ଗରେ ମିଶିଥିଲା ପରି ନୁହେଁ, ଦିନର ତେଜ ଗୋଧୂଳି ସାଙ୍ଗରେ, ଜ୍ଞାନ ଅଜ୍ଞାନରେ ମିଳେଇ ଗଲାପରି···ତାପରେ ଅନ୍ଧାର ନୁହେଁ, କେବଳ ନୀଳିମା । ଓଃ ! ନୀଳିମାରେ ଧଳା ଚଢେଇଟାଏ ଏମିତି ଅସ୍ତବ୍ୟସ୍ତ ହୋଇ ଘୁରି ବୁଲୁଛି କାହିଁକି ? ଜିତା ଏଇ ତୋ'ର ନିଜତ୍ୱ, ଅକ୍ଷର, ଅଙ୍କନ, ମୂଲ୍ୟବାନ ଅଶାନ୍ତି···ଚଢ଼େଇ ମରୁ । ପୋଷ୍ଟ ଗ୍ରାଜୁଏଟ୍ ହଷ୍ଟେଲରେ

ରେଣୁକା ସାଙ୍ଗରେ ଏକା ବଛଣାରେ ଶୋଇ ରହି ଥରେ ଅଧେ ଏମିତି ମନେ ହୋଇଥିଲା । ଦେହକୁ ନେଇ ଏତେ ଶାନ୍ତି ! ! ଧଳା ଚଢ଼େଇ ମରୁ ।

ଧଳା ଚଢ଼େଇ ମଲା ନାହିଁ । ସଞ୍ଚିତାକୁ ଅସ୍ଥିର ଲାଗିଲା । ଦୁଇନାରୀ ଦୃଷିତ ଶାନ୍ତିରୁ ମୁକୁଳି ଯିବାକୁ ମନ ହେଲା । ମୁଁ କ'ଣ ପୁରୁଷ ମାନଙ୍କୁ ଡରେ ନା କ'ଣ ? ମୁଁ କ'ଣ ଚାହେଁ ଅପା ଆଉ ମୁଁ ଦେହରୁ ମନରୁ ଲୁଗା ଖୋଲି ଦେଇ ଏକାଠି ହୋଇଯିବୁଁ । ଆଉ ମନୋଜ ଭାଇମାନେ ପୁରୁଷମାନେ ଘର ବାହାରେ ଛିଡ଼ା ହୋଇ କୁଆପଥର ମାଡ଼ ଖାଉଥିବେ ?

ମନୋଜ ଭାଇ ତୁମେ କେଉଁଠି ଅଛ ଚାଲି ଆସୁନାହଁ କାହିଁକି ? ଚାଲିଆସି ତୁମ ସ୍ତ୍ରୀକୁ ନେଇଯାଅ । ମୋତେ ମୁକ୍ତ କରିଦିଅ । ମୋତେ ତୁମର ଯୁଗ୍ମ ସଂସାରକୁ ଦେଖି ମୁର୍କି ମୁର୍କି ହସିବାକୁ ଦିଅ । ମୋତେ ଏକୁଟିଆ ମନଇଚ୍ଛା ଆଂକିବାକୁ ଦିଅ ।

ସୌଭାଗ୍ୟବଶତଃ ଏତିକିବେଳେ ଟିଂଗ୍ ଟିଂଗ୍ ଶବ୍ଦ ହେଲା । ସଞ୍ଚିତା ଉଠିପଡ଼ି ଦାଣ୍ଡ ଦରଜା ଖୋଲିଦେଲା । ମନୋଜବାବୁ ଗୋଟିପଣେ ଓଦା ହୋଇ ଆବିର୍ଭୂତ ହେଲେ । ସ୍ତ୍ରୀଙ୍କ ଚେହେରା ଦେଖି ଦୁଇ ପାଟି ଦାନ୍ତର ହସ ମେଲେଇ କହିଲେ—"କ'ଣ ହୋଇଛି ତୁମର ? ଡରୁଥିଲ ?"

"ଡ଼ରିବ କାହିଁକି ମ ? ମୁଁ ଏକୁଟିଆ ନ ଥିଲି । ମୋ ପାଖରେ ମୋର ଭଉଣୀ ଥିଲା ବୋଲି ଜାଣିନାହଁ ?"

"ଠିକ୍ । ଏମିତି ସେମିତି ଭଉଣୀ ନୁହେଁ । ସଞ୍ଚିତା! । ଲକ୍ଷେ ପୁରୁଷଙ୍କର ନାକ କାଟି ଦେବ । କାହାନ୍ତି ତୁମ ଭଉଣୀ ? ମୋତେ ପାଛୋଟିବାକୁ ଆସିବେ ନାହିଁ ?"

ସଞ୍ଚିତା ପାଛୋଟିବାକୁ ଅସିଲା ନାହିଁ । ଆପଣା କୋଠରୀକୁ ଫେରିଯାଇ ଝରକା ଖୋଲି ଦେଲା । ବାହାରେ କେବଳ ପବନ, ହେମାଳ ଆଉ ଝିପୁରୁ ଝିପୁରୁ ବର୍ଷା ।

କାଗଜରେ ଲେସି ହୋଇ ଯାଇଥିବା ଛବି ତା'ଆଖିରେ ପଡ଼ିଲା । ଫାଙ୍କୁଆ ନାହିଁ । କେଉଁ ଆକାଶ ପଥର ମୋ ଛବିରେ ଖୋଳା ହୋଇଥିବା ଗାରକୁ ଲିଭେଇ ପାରିବ ନାହିଁ । ମୁଁ ତା'ଉପରେ ନୂଆ ଗାର ଆଂକିବି । ମନ ଭରିବା ଯାଏ ଆଂକିଯିବି । ସାରିବି କି ନାହିଁ, ଛିଂଡ଼େଇ ଦେବି କି ନାହିଁ ସେ କଥା ଅଲଗା । ସେଥିରେ ପୁରୁଷ ନାହିଁ କି ନାରୀ ନାହିଁ ।

ନାହିଁ ? ଝରକା ଭିତରେ ପବନ ପଶିଆସି କହିଲା ପରି ଲାଗିଲା – ଜିତା, ତୁ ମିଛ କହୁଚୁ । ତୋ ଆଉଁରି ଶିରାପ୍ରଶିରାରେ ଅଛି ଲକ୍ଷ ପୁରୁଷମାନଙ୍କର ନାକ କାଟି ଦେବାର ପ୍ରବୃତ୍ତି, ସେକ୍ସ୍, ନିଆଁର ଜ୍ୱାଳା, ଉପଶମ, ନିଷେଧ ପୁଣି ଜ୍ୱାଳା···

ତାହା ହେଲେ କ'ଣ କରିବ ? କାହା ସାଙ୍ଗରେ ସଂପର୍କ ଥାପିବ ? ମଣିଷ-ମାନଙ୍କୁ ମାରି ଗୋଳି, ଗଛପତ୍ରର ଆକାଶ ପବନକୁ ଲୋଡ଼ିବ ? ? ପ୍ରକୃତି ? ନା ସେଥିରେ ମିଳିବ ନାହିଁ । କାରଣ ସେମାନେ ମଧ୍ୟ କେତେ ଢ଼ଙ୍ଗରେ ପୁରୁଷ ନାରୀ ବେଶ ଧରି ମୋର କଳ୍ପନା ଭିତରକୁ ଆସିବେ । ମୋର ଦୋଷ ନୁହେଁ, ବଡ ବଡ଼ କଳାକାରମାନଙ୍କର ସେଇ ଦଶା ହୋଇଛି ବୋଲି ସେମାନେ କୁହନ୍ତି ।

କ୍ଲୀବ କିଏ ? ଭଗବାନ୍ ? ସମାଜବାଦ, ଅସ୍ତିବାଦ, ନାସ୍ତିବାଦ ? ଧୂସର ଆଦର୍ଶ, ଆଇଡ଼ିଆ, ବିଶ୍ୱ-ଚେତନା ? ସଂପୂର୍ଣ୍ଣ ମୁକ୍ତି ପାଇବାକୁ ହେଲେ ସେଇଥିରୁ ଗୋଟିଏ ଧରିବାକୁ ହେବ ? କିନ୍ତୁ କେମିତି ଧରିବ ? ମୁଁ ପରି ସଞ୍ଜିତା ଦାସ, ପ୍ରାଣ ଯୌବନରେ କୁଳୁ କୁଳୁ ହେଉଛି, ପୁରୁଷମାନଙ୍କର ନାକ କାଟିବା ଅବଳାମାନଙ୍କୁ ସାନ୍ତ୍ୱନା ଦେବା ମୋର ସ୍ୱଧର୍ମ ? ବାପା କହୁଥିଲେ ସେ ଗୃହାନ୍ତ ମୁଁ ସବୁବେଳେ ବେପରୁଆ ହୋଇ ଉଡୁଥିବ । ବାପା କହୁଥିଲେ । ବାପା ମରିଗଲେଣି ।

ସଞ୍ଜିତାକୁ କାନ୍ଦ ମାଡ଼ିଲା ସିନା, ସେ ଚେଷ୍ଟାକଲା ଲୁହ ଟୋପାଟାଏ ତା'ର ମାଙ୍କଡ଼ାମିକୁ ପୁଣି ଲଭେଇ ନ ଦେଉ ।

କେତେ ରାତିଯାଏ ସଞ୍ଜିତା ସେଠି ବସି ରହିଲା । ସୁନା ପିଲା ପରି ବର୍ଷା ଥମିଗଲା, ରାତିକୁ ଆରାମରେ ଶୋଇବାକୁ ଦେଲା । ନିଦଭଙ୍ଗା ନିର୍ମଳ ଆକାଶକୁ ଧୀରେ ସୁସ୍ଥେ ଆସିବାକୁ କହିଲା । କିନ୍ତୁ ସଞ୍ଜିତାର ଆଖିରେ ନିଦ ଆସିଲା ନାହିଁ । ଅପା ମନୋଜ ଭାଇଙ୍କ ଶୋଇବା ଘରୁ କେତେ ଭଳି ଶବ୍ଦ ତା କାନରେ ପଡ଼ିଲା । ଫୁସ୍ ଫୁସ୍ କଥା ଅନୁଚ୍ଚ ହସ, କ୍ଳି କ୍ଳି···କବାଟ ଖୋଲିଲା, ଦୁହେଁ ଯାକ ବୋଧହୁଏ ବାଥ୍‌ରୁମ୍‌କୁ ଗଲେ । ସମସ୍ତ ଉଚ୍ଚାରଣ ଉଦ୍‌ଗୀରଣ କ୍ରିୟା ପ୍ରକ୍ରିୟାକୁ ମିଶେଇବା ଦ୍ୱାରା ଯେଉଁ ଜିନିଷଟି ଗଢ଼ି ଉଠିଲା ତାର ନା ପ୍ରେମ ? ଦାମ୍ପତ୍ୟ ପ୍ରେମ ? ରବିସ !

ସଞ୍ଜିତା-ସ୍ଥିର କଲା ଯେ ଏଥର ଅପା ଘରୁ ଫେରି ଗଲେ ସେ ଛୁଟିରେ ନିଜର ସରକାରୀ କ୍ୱାର୍ଟର୍ସରେ ମୁହଁ ମାଡ଼ି ପଡ଼ି ରହିବ । ଆପଣା ଖୁସିରେ ଗୀତ ଆଙ୍କିବ । ସାଭିମାନରାଣୀ ରାନ୍ଧୁଣୀ ହାତରୁ ସ୍ୱାଦୁଗନ୍ଧ ବିବର୍ଜିତ ଭାତ ଡାଲି ତରକାରୀ ଖାଇବ । କେତେବେଳେ କେମିତି ରେସ୍ତୋରାଁରେ ବସି ଏକୁଟିଆ ମଟନ୍ ଚପ୍ ଗ୍ରେବୋଇବ, ଗ୍ଳୁ ଗ୍ଳୁ କରି ସମସ୍ତଙ୍କୁ ଲମ୍ବେଇବ । ନ ହେଲେ (କ୍ୟା ପରୁଆ) ଝୁଲୁ ବାନାର୍ଜି,

ସୁରଜିତ୍ କହିବ ଇତ୍ୟାଦି କୌଣସି ସଙ୍ଗୀତର ଅନୁରୋଧ ରକ୍ଷାକରି କୋଉ ଡିସ୍କୋରେ ସାମିଲ ହୋଇଯିବ । ଅନ୍ତନାଡ଼ୀ ଜଳିଯାଉ ପଛେ ଜିନ୍ ହୁଇସ୍କି ପିଇବା । ନାଚ ଗୀତ ହସର ରୋଳ ଉଠିବ, ସ୍ତାବକ ମିଳିବେ । ପୁରୁଷମାନଙ୍କ ନାକ କାଟିବାର, ହୁଏତ ରାତି ବିକାଳି ଫ୍ରୀ ସେକ୍ସର ସୁବିଧା ମିଳିବ । ଅପା ମୋତେ ଜାଣିଛୁ ? ନା କେଉଁ ସ୍ମୃତି, ଆସନ୍ନା ସକାଳର ସଙ୍କେତ ମୋତେ ବାନ୍ଧି ରଖିଛୁ ? ସଞ୍ଚିତା ଅନାଗତ ଉଲଗ୍ନ ଶତାବ୍ଦୀକୁ ଡ଼ାକି ଚାଲିବ । କ୍ୟା ପରୁଆ ?

ପ୍ରକୃତରେ ସଞ୍ଚିତା ଡ଼ିସ୍କୋ ଇତ୍ୟାଦିକୁ କ୍ୱଚିତ୍ ଯାଏ । ସାଙ୍ଗମାନେ ଡାକନ୍ତି, କିନ୍ତୁ ସେ କିଛି ନା କିଛି ବାହାନାକରି କ୍ଷମା ମାଗି ନିଏ । ଅଲ୍ ଇଣ୍ଡିଆ ସର୍ଭିସରେ ମୁଣ୍ଡ ଘୂରା କାମ, ଦାୟିତ୍ୱ କିଛି କମ୍ ନୁହେଁ । ଭାରତ ବର୍ଷ ତଥା ନିଜ ପ୍ରାନ୍ତରେ ଯେଉଁ ମୁଷ୍ଟିମେୟ ଝିଅ ଏ ଭଳି ସମ୍ମାନର ଅଧିକାରିଣୀ ହୋଇ ପାରିଛନ୍ତି ସେ ତାଙ୍କର ଭିତରୁ ଜଣେ । ସମସ୍ତଙ୍କ ଆଖି ତା'ର ଉପରେ । ଯେତେହେଲେ ଝିଅ, ଯେତେ ପାଠ ପଢ଼ିଲେ କ'ଣ ହେବ, ଶାସନଭାର ତୁଲାଇବାର ଯୋଗ୍ୟତା ଆସିବ କେଉଁଠୁଁ ? ଆଧୁନିକା ମିସ୍, ଫେସନ୍ କରୁ କରୁ ସମୟ ଯିବ, ଶୁଖିଲା ଫାଇଲ-ଚପା କାମକୁ ମଗଜ କାହିଁ ? କିଓ ଜାତିର ବଂଶ ବଢ଼ାଇବା ପାଇଁ ତୁମର ଜନ୍ମ । ତୁମକୁ ଏଠିକି ଆସିବାକୁ କିଏ କହିଲା ? ଇତ୍ୟାଦି କେତେ ଭଳିକି ଭଳି ଟିପ୍ପଣୀ ଶୁଣିବାକୁ ମିଳେ । ସଞ୍ଚିତା ଶୁଣିଯାଏ । ତୁମକଥା ସତ ହେଲେ ହେଉ, ମୋର ଗର୍ବ ମଧ୍ୟ ସତ । ମୁଁ ଚାହିଁଛି ମୁଁ ନିଜ ଗୋଡ଼ରେ ଛିଡ଼ା ହେବି । ବାପା ମନା କରି ନାହାନ୍ତି ।···ବାପା କହୁଛନ୍ତି । ମୁଁ କହୁଛି ପରି ବାପା କହୁଛନ୍ତି । ସଞ୍ଚିତା କାମକରି ଯାଏ । ଉପର ହାକିମମାନେ ସନ୍ତୁଷ୍ଟ ବୋଲି ମନେହୁଏ । ସହକର୍ମୀ ପୁଅ ଝିଅଙ୍କ ସାଙ୍ଗରେ ଅଳ୍ପ ବହୁତ ମିଳାମିଶା କରେ । ଡିପାର୍ଟମେଣ୍ଟର ଭିତରି କଥାଠାରୁ ଆରମ୍ଭ କରି ଭାରତର ଆର୍ଥିକ ରାଜନୈତିକ ସମସ୍ୟା ଉପରେ ହାଲୁକା ଆଲୋଚନା କରେ । ହସେ । ତା'ର ଦାନ୍ତ ଦୁଇପାଟି ଭାରି ସୁନ୍ଦର । କିନ୍ତୁ ସେମାନେ ଅଧିକାଂଶ ତାର ଦୃଢ଼ ଚିବୁକକୁ ଲକ୍ଷ୍ୟ କରନ୍ତି ବୋଲି ସଞ୍ଚିତାର ଧାରଣା । କେହି କ'ଣ ମୋର ଏକୁଟିଆ ସୃଜନପ୍ରବଣ ଚାହାଣୀକୁ ଦେଖି ପାରିଛନ୍ତି ? ଦିଗହଜା ଦିଗନ୍ତକୁ ଛୁଞ୍ଚେଇ ପଳେଇ ଯିବାକୁ ବସିଥିବା ଚାହାଣୀକୁ ଦେଖି ଆହା କି ଚମତ୍କାର ବୋଲି କହୁଛନ୍ତି ? ପାରିବେ ନାହିଁ । ମୁଁ ସହଜେ ଧରା ଦେବି ନାହିଁ । ଅପା ଅବଶ୍ୟ କହେ ଯେ ବେଳେବେଳେ ମୋ ଆଖିରେ ଉପାସିଆ ଦୁଃଖର ଚେହେରା ଦିଶିଯାଏ । ଅପା ଗୋଟିଏ ରୋମାଣ୍ଟିକ । ତା'ଛଡ଼ା ଅପା ହେଉଛି ଲିଙ୍ଗୁଳିକଟା ଶୃଗାଳ, ତା'ର ଏମିତି କହିବାର ଉଦ୍ଦେଶ୍ୟ ଭିନ୍ନ ।

ଦିନ ଗଡ଼ିଯାଏ । ଅବସର ମୁହୂର୍ତ୍ତରେ କାଗଜ ପରେ କାଗଜ ଗୋଳ ମୁନ ଗୋଲ୍ ବର୍ଣ୍ଣିଷ୍ଟ ଆର୍ଟରେ ଭରିଯାଏ । କି ଧରଣର ଆର୍ଟ ? ଆବ୍‌ଷ୍ଟ୍ରାକ୍‌ଟ ? ପପ୍ ? ଇଂପ୍ରେସନିଷ୍ଟ ? ଏକ୍‌ସ୍‌ପ୍ରେସନିଷ୍ଟ ? ରଖ ତୁମର ଅଭିଧାନ । ମୋ ଆର୍ଟ ମୋର । ମୁଁ ତାକୁ କେଉଁ ପ୍ରଦର୍ଶନୀରେ ଟାଙ୍ଗିବାକୁ ଯାଉ ନାହିଁ । ନିରେଖି ଦେଖିଲେ ହୁଏତ ଦେଖି ପାରିବ ଗୋଟିଏ ଆଖି (ରାକ୍ଷସ ଆଖି) ବିକଳ ହୋଇ ତୁମକୁ ଚାହିଁଛି, କିମ୍ବା ଗୋଟିଏ ଓଠ (ନିଷ୍ଠୁର ଓଠ) ତୁମଠାରୁ ଗେହ୍ଲା ମାଗୁଛି··· ତୁମେ ବୁଝି ପାରିବ ନାହିଁ ଆର୍ଟ ଅଧାପନ୍ତରିଆ ହୋଇ ରହିଯାଏ । ହେଲେ ନିଜକୁ ବ୍ୟକ୍ତ କରିବାରେ ଆନନ୍ଦ ମିଳେ । ରାନ୍ଧୁଣୀ-ଗୃହକର୍ତ୍ତ୍ରୀ ସ୍ତ୍ରୀ ଯେତେକ ଘର କାମ ଭୁଲେଇ ଦିଏ । ଦିନସ୍ୱଚ୍ଛନ୍ଦରେ ଗଡ଼ିଯାଏ ।

କିନ୍ତୁ ବେଳେ ବେଳେ କୁହୁଳୁଥିବା ନିଆଁ । କେଉଁଠିଥାଏ ଧପ୍‌କିନା ଜଳିଉଠେ । ଜହ୍ନରୁ ଉତ୍ତାପ ଆସେ ? ଘାସରୁ ଉତ୍କଟ ବାମ୍ପ ଉଠେ ? ନା ସହକର୍ମିଣୀ ରାଧୀକା ବୋସ୍‌ର ଉଦ୍ଧତ ଲୋ-କଟ୍ ବ୍ଲାଉସ୍ ତା'ର ନାସାରନ୍ଧ୍ରକୁ ଉସ୍‌କାଏ ? ସେତେବେଳେ ସସ୍ମିତାର ମନେ ହୁଏ ଯେ ନିଆଁ ଲିଭେଇବାକୁ ହେଲେ ସଂଯୋଗ ଆବଶ୍ୟକ । ସଂଯୋଗର ନିରାନନ୍ଦ । ପାର୍ଟି ଡ଼ିସ୍‌କୋ । ଜିନ୍ ହୁଇସ୍କି । ପୁରୁଷ କେତେଥର ପିଇବାକୁ ବସେ ପିନା, କ୍ୱଚିତ ଯାଏ । ଯାଇ କ୍ୱଚିତ ଶେଷ ପର୍ଯ୍ୟନ୍ତ ରହିନଏ । ଦେଖିବାକୁ ଗଲେ, ଗତ ବର୍ଷକ ଭିତରେ ସେକ୍‌ସ ଅଢ଼େଇଥର ହୋଇଛି । ଭଣ୍ଡ ମାର୍କିଷ୍ଟ ବିକ୍ରମ ସାଙ୍ଗରେ ଥରେ, ଭଣ୍ଡ ଯୋଗୀ ବାଲଚନ୍ଦ୍ରନ୍ ସଙ୍ଗେ ଥରେ (ସ୍ୱାମୀ ଅଦ୍ୱୈତାନନ୍ଦ ଭାରତୀ କୁଆଡ଼େ କହିଥିଲେ ଯେ ଜାରଜ ସେକ୍‌ସରେ ମଧ୍ୟ ଶୂନ୍ୟ ଭାବର ଶାନ୍ତି ଆସି ପାରେ) ଆଉ ଭଣ୍ଡ ଯୌବନ ଅଣ୍ଡର ଗ୍ରାଜୁଏଟ୍ ପୁରୁ ସାଙ୍ଗରେ ଫାଲେ । ସବୁ ଭଣ୍ଡ । ଦରକଞ୍ଚା, ଦରପାଚିଲା, ଅଧାମିଛ ! ଘରକୁ ଫେରିଲା ପରେ ଅପା ମନେ ପଡ଼େ । ଅପା ସାଙ୍ଗରେ ମୁକାବିଲା କରିବାକୁ ଇଚ୍ଛାହୁଏ । ଅପା ଛଡ଼ା ଆଉ କେହି ନିଜର ନାହିଁ, ସେଇ କେବଳ କହିପାରିବ, ବୁଝି ବିସ୍ତରିଲେ କହିପାରିବ······

ଯେଉଁଠି ସଂଯୋଗ

ପୁରୁଷ,

କ୍ରୋଧ···ସେଠି ପ୍ରେମ କେମିତି କେଉଁ ବାଟରେ ଆସିବ ? ?

ନା, ଅପା ଦେଇ ହେବ ନାହିଁ । ବାପା ମୋତେ କହି ଯାଇଛନ୍ତି । ବାପା ମୋତେ ଏତେ ଭଲ ପାଉଥିଲେ ବୋଲି କହି ଯାଇଛନ୍ତି । ତୁଣ୍ଡରେ ନ କହିଲେ କ'ଣ ହେବ ।—

ଅନେକ ଦିନରୁ ଅପା ସାଙ୍ଗରେ ଦେଖା ହୋଇନାହିଁ । ଖରାଦିନେ ଦୁଇସପ୍ତାହ ଛୁଟି ନେଇ ସେଇଠି ଥିଲି ।ତା'ପରେ ସରକାରୀ ଛୁଟି ଆସିନାହିଁ । ହେଲେ ଶନିବାର ରବିବାର କ'ଣ ଯାଇ ହୋଇ ନ ଥାନ୍ତା ? ଅପା ଫୋନ୍‌ରେ ଅଭିମାନ କରି କହିଥିଲା—ତୁ ଅପାକୁ ଭୁଲି ଗଲୁଣି—କାହିଁକି ମନେ ରଖିବୁ, ତୁ ହାକିମ ଲୋକ, ଅପା ହେଉଛି ଘରକରଣାର ଜୀବ, ଇତ୍ୟାଦି । ସଞ୍ଚିତା ସାକୁଲେଇ କହିଥିଲି ଯେ, ସତରେ ତା'ର ଆଜକାଲି ବହୁତ କାମ, ଆଦୌ ଫୁର୍‌ସତ୍ ନାହିଁ, ରବିବାର ଦିନରେ ବଫାଇଲ୍ ଘରକୁ ଆଣିବାକୁ ପଡ଼ୁଛି । ସଫେଇରେ ସତ ନାହିଁ ବୋଲି ନୁହେଁ । ତା'ଛଡ଼ା ଅପାର ସୁଖୀ ସଂସାର । ସେଥିରେ ମୋତେ ଖୋଜା ପଡ଼ୁଛି କାହିଁକି ? ମୁଁ ସୁବିଧା କରି ଯିବି, ତୁ ମୋର ଗୋଟିଏ ବୋଲି ଭଉଣୀ (ଭାଇଟିଏ ଥିଲେ ଯେ କିଛି ଊଣା ହୋଇଥାନ୍ତା, ତା' ନୁହେଁ) କିନ୍ତୁ ମୋର କ'ଣ କେହି ସାଙ୍ଗସାଥୀ ନାହାନ୍ତି ? ଯେଉଁମାନେ ମୋଉପରି ବାହାସାହା ହୋଇ ନାହାନ୍ତି, ଏକୁଟିଆ କାମଧନ୍ଦା କରୁଛନ୍ତି, ଦରକାର ପଡ଼ିଲେ ମୁଁ ସେମାନଙ୍କ ପାଖକୁ କାହିଁକି ଯିବି ନାହିଁ ? ସେମାନେ କାହିଁକି ମୋର ନିଜର ହୋଇ ପାରିବେ ନାହିଁ ।

କିଏ ସେମାନେ ? ଝୁଲୁ ବାନାର୍ଜି ? ବଡ଼ଲୋକ ବାପାର କୋଡ଼ପୋଛା ଝିଅ, ହେଲେ ବଡ଼ଲୋକ ମୋଟେ ନାହିଁ ? ବଡ଼ଲୋକ ନାହିଁ କି ଛନ୍ଦ କପଟ ନାହିଁ । କିନ୍ତୁ ତା ପାଖକୁ ଘୁଞ୍ଚି ଆସିଲେ ମନେ ହୁଏ ତା' ଦେହଯାକ ଘାଆ । ସତେ କି ଲକ୍ଷେ ପୁରୁଷଙ୍କ ବିଷ ତା'ର ଚ୍ଛୋଟିଆ ଦେହ ଭିତରେ ଠାବ ନ ପାଇ ଉପରକୁ ଉଠି ଆସିଛନ୍ତି । ସଞ୍ଚିତା ନିଜକୁ କହେ ଯେ, ଏମିତି ଭାବିବା ଅନ୍ୟାୟ । ଅଚ୍ଛେଇ ଏବଂ ଅନେଶୋତ ମଧ୍ୟରେ କୌଣସି ଜାତଗତ ପାର୍ଥକ୍ୟ ନାହିଁ । କିନ୍ତୁ ସେ ପରକ୍ଷଣରେ ଇଶ୍ୱର ଦିଏ ଯେ ସେ ପୁରୁଷବିଷ ଭିତରକୁ ନେଇଛି ସିନା, ଗ୍ରହଣ କରି ପାରିନାହିଁ କି ପାରିବ ନାହିଁ । କାରଣ ଯୁକ୍ତି ସଙ୍ଗତ ହେଲା ନାହିଁ ? ସେଇଥି ସେ ଅପାକୁ ସ୍ମରଣ କରେ, ଦାବୀ କରେ ଯେ, ସେ ଅପାର ଭଉଣୀ । ଅପାର ମସୃଣ ଦେହ କେବଳ ଦେହ ନୁହେଁ, ମନର ପ୍ରତିଫଳନ । ଏକାଧିକ ପୁରୁଷ ଦ୍ୱାରା ଆକ୍ରମିତ ହେଲେ ମଧ୍ୟ ସେ କଳୁଷିତ ହୋଇ ପାରିବ ନାହିଁ । କାହିଁ କି ନା ସେ ସମ୍ପୂର୍ଣ୍ଣ ନାରୀ । ସାଗରିକା । ପୂର୍ଣ୍ଣୀତା, ପୂର୍ଣ୍ଣତୋୟା । ମୁଁ ଯେତେହେଲେ ତା'ର ଭଉଣୀ । ଝୁଲୁ ବାନାର୍ଜି କଥା ଛାଡ଼, ଆଉ କ'ଣ କେହି ନାହାନ୍ତି ? ଅଛନ୍ତି ? ସୁରଜୀତ୍ କଉର, ଶର୍ମିଷ୍ଠା, ଲଛମୀ ରାଓ ଇତ୍ୟାଦି । ସେମାନଙ୍କ ସଙ୍ଗେ ଅଧିକ

ମିଳାମିଶା କଲେ ସେମାନେ ନିଶ୍ଚୟ ଖୁସି ହେବେ, ଅନ୍ତତଃ ମୋର ହେମାଳ ଶଙ୍ଖ ମଲମଲ ପଣକୁ ବଶକର ପାରିଛନ୍ତି ବୋଲି ଖୁସିହେବେ । କିନ୍ତୁ ଏକାଠି ବୁଲିଲେ, ଗ୍ପ' ଖାଇଲେ, ସିନେମା ଦେଖିଲେ କ'ଣ କାହାକୁ ନଜର କରିହୁଏ ? ଅନ୍ତରଙ୍ଗତାର ଉପାଦାନ ଭିନ୍ନ । କେଉଁଭଳି ଭିନ୍ନ ? ସଞ୍ଚିତା ବାଖ୍ୟା କରି ପାରେନାହିଁ । କେମିତି ଚଳିହେବ ବୋଲି ବୁଝିପାରେ ନାହିଁ । ବିରକ୍ତ ହୋଇ ଭାବେ ଯେ, ଇଏ ହେଉଛି ତା'ର ଜନ୍ମଗତ ଅଭିଶାପ—ଅପା ଓ ମୁଁ ଗୋଟିଏ ବୃନ୍ତରେ ଯୋଡ଼ିଏ ଫୁଲ ହୋଇ ଜନ୍ମ ହୋଇଛୁଁ । ସେ ଗୋଲପି ମୁଁ ଲାଲ୍ । କିନ୍ତୁ ଆମେ ପରସ୍ପର ଠାରୁ ଅଲଗା ହୋଇ ରହି ପାରିବୁ ନାହିଁ । ଦୁର୍ଭାଗ୍ୟ ! !

ସଞ୍ଚିତା କିଛି ଗୋଟାଏ ଆଳ ଖୋଜି ଅପାର ଘରେ ହାଜିର୍ ହୋଇଯିବା ପୂର୍ବରୁ ଅପାର ଫୋନ୍ ଆସିଲା । ସ୍ୱରରେ ନିର୍ଘ୍ରଭରଣ ଅଳି ।

"ଜିତା, ତୁ କେବେ ଆସିବୁ କହିଲୁ ?"

"ଆସିବି—ଭାବୁଛି..."

"ତୋ ଭାବନା ସେତିକି ଥାଉ, ଆଜି ସନ୍ଧ୍ୟାରେ ଆସିବୁ ନାହିଁ ?"

"ଆଜି ସନ୍ଧ୍ୟାରେ ? କଲେ ଏତେ ତରତର କାହିଁକି ? କ'ଣ ହେଲା ?"

"କିଛି ନାହିଁ । ଆମ ଘରେ କିଛି ଘଟିବାର ସମ୍ଭାବନା ନାହିଁ । ତା' ବୋଲି କ'ଣ ତୁ ଆସିବୁ ନାହିଁ ?"

"କ'ଣ ପାଗଳୀଙ୍କ ପରି କହୁଛୁ କହିଲୁ ? (ପରିହାସ ଛଳରେ) ମନୋଜ ଭାଇ ଗାଳିଦେଲେ ?"

"ନା । ତାଙ୍କର ସେ କ୍ଷମତା ନାହିଁ ।"

"ଅପାର ଗମ୍ଭୀର ପଣକୁ ଜୁହାର କଲାପରି ସଞ୍ଚିତା ନୀରବ ହୋଇଗଲା । ସେଇଠୁ ସସ୍ମିତା ଅଜାଡ଼ି ହୋଇ ପଡ଼ିଲା ।

"ତୁ ଆସିବୁ, ପ୍ଲିଜ୍, ତୋତେ ମୋ ରାଣ । ଆଜି ନ ହେଲେ କାଲି—"

ସଞ୍ଚିତା ଜାଣି ଶୁଣି ଦୁଇଦିନ ପରେ ଗଲା । ଅକାରଣରେ ଅପାର ମୁଣ୍ଡକୁ ଏମିତି ପୋକ ଚଢ଼େ । ଅପାଙ୍କୁ ପ୍ରଶସ୍ତ ଦେବା ଉଚିତ ନୁହେଁ । ନ ହେଲେ ସେ

ସବୁଥର ଏମିତି ମୋତେ ହଇରାଣ କରିବ, ମଣିଷ ହୋଇ ପାରିବ ନାହିଁ । ତା'ର କିଛି ଅଭାବ ନାହିଁ । ମନୋଜ ଭାଇ ତାକୁ ଭଲ ପାଆନ୍ତି, ସନ୍ଦେହ ନାହିଁ । ପ୍ରକାଶକ ବଂଶର ପୁଅ, ବହି ଦୋକାନର ମାଲିକ, ସ୍ତ୍ରୀର ମନୋରଞ୍ଜନ ପାଇଁ ଭଲକି ଭଲ ବହି ଆଣି ଦିଅନ୍ତି । ହପ୍ତାକୁ ଥରେ ଦି'ଥର ସିନେମା ଦେଖେଇ ନିଅନ୍ତି । ରେସ୍ତୋରାଁରେ ଖୁଆନ୍ତି । ତା'ଛଡ଼ା ନିଭୃତରେ କ'ଣ କରନ୍ତି ସେମାନଙ୍କୁ ଜଣା, ପ୍ରକାଶ୍ୟରେ ମୋର ଆଗରେ···ଜିତା, ତୋର ହିଂସା ହେଉଛି କିଲେ ? ନା, ହିଂସାରେ ପ୍ରଶ୍ନ ଉଠୁନାହିଁ । କିନ୍ତୁ ମୁଁ ଜାଣେ ତେ'ର ପ୍ରକୃତିରେ କିଛି ଦୁଃଖ ନାହିଁ । ଦୁଃଖର ବିଳାସ । ଆଚ୍ଛା ହେଉ, ମୁଁ ଯିବ । ହେଲେ ଆଜି ନୁହେଁ, କାଲି ନୁହେଁ । ଆଜି ଅବଶ୍ୟ ବେଶି ଡେରି କରିବା ଉଚିତ ନୁହେଁ । ତୋ ପେଟରେ ଯେଉଁ ପ୍ରାଣୀଟିଏ ଅଛି ସେଇ ହୁଏତ ତୋତେ ବାଉଳା କରୁଥିବ, ଡାକ୍ତରମାନେ କହନ୍ତିପରି···

ଅପାର ଘରେ ପହଞ୍ଚି ତାକୁ ଦେଖିଲକ୍ଷଣି ସଞ୍ଚିତା ଆଶ୍ଚର୍ଯ୍ୟ ହେଲା । ଚଢ଼ି ମାଡ଼ିଲା । ନୀଳ ଆକାଶର କେଉଁ କୋଣରେ ଯଦି ଚେନାଏ ବଉଦ କେନ୍ଦରା ବଜାଉଥିବ, ତାର ଲକ୍ଷଣ କାହିଁ ? କାହିଁ, ତୋ ମୁହଁରେ ଚାହାଣୀରେ କାହିଁ ? ସେଇ ଶାନ୍ତ, ମସୃଣ (ନିର୍ବୋଧ ଚେହେରା···) ଉଚ୍ଛାଟାକୁ ମୋତେ ଡାକି ଆଣିଲୁ କାହିଁକି ?

ଦିନକରୁ ଦୁଇଦିନ ତିନି ଦିନ ହେଲା । ରବିବାର ମିଶେଇ କାଜୁଆଲ୍ ଲିଭ୍ ସରି ଆସିଲା । ସସ୍ମିତା ଡ଼ରିଲା ପରି ପ୍ରସ୍ତାବ କଲା—ଆଉ କିଛିଦିନ ରହି ଯାଆ ମ···ନ ହେଲେ ଅଫିସରୁ ସିଧା ଏଇଠିକି ଚାଲି ଆସିବୁ । କିଛି କ୍ଷତି ହେବ ? ଟ୍ୟାକ୍‌ସି ଭଡ଼ା ମୋଠୁ ନେବୁ । ସଞ୍ଚିତା ହସି ପକେଇଲା । ବିଚିତ୍ର ଅପା ! ମୋର ଟ୍ୟାକ୍‌ସି ଲୋଡ଼ା ନାହିଁ । ବସ୍‌ରେ ଆସିବ । ଯେତେଦିନ ଚାହୁଁଛୁ, ସେତେଦିନ ରହିବ । କିନ୍ତୁ କାହିଁକି ରହିବ ବୁଝେଇ ଦେଇ ପାରିଲୁ ନାହିଁ ?

ମୁଁ ଜାଣେ ସବୁ କାମଦାମ ହସଖୁସି ସ୍ୱାଭାବିକତାର ବାହାପଟେ ଅପା ମୋର ଚଇଁଚଇଁ ହେଉଛି, ମୋତେ କିଛି କହିବ ବୋଲି । କହି ଦେଉନୁ କାହିଁକି ? କେବେ କହିବୁ ?

ଗୋଟିଏ ଶେଦୁଅ ସନ୍ଧ୍ୟାରେ—ମନୋଜ ଭାଇ ଘରେ ନ ଥିଲେ, କହି ଯାଇଥିଲେ ପ୍ରେସ୍‌କୁ ଯିବେ, ଫେରୁ ଫେରୁ ଡେରିହେବ— ସସ୍ମିତା ଥକା ମାରିଲା ପରି ଶୋଇବା ଘର ପଲଙ୍କରେ ଆଉଜି ଗଲା ଏବଂ ସଞ୍ଚିତାକୁ ଆଉ ପାଖରେ

ବସିବାକୁ କହିଲା । ସଞ୍ଜିତାର ଧାରଣା ହେଲା ଯେ ପରିବେଶ ଅନୁକୂଳ । ପାଣିପାଗ ଉଚିତ ମାତ୍ରାରେ ପ୍ରବଣ ଏବଂ ଉଦାସ । ଏତିକିବେଳେ କହିବୁ ଯାହା କହିବେ । ଶୁଣିବ, ଶୋଷିନେବ ।

"ଜିତା, ବାପା କାହିଁକି ମରିଗଲେ ?"

ପାଣିପାଗ ସ୍ତବ୍ଧ ହେଲା । ସଞ୍ଜିତା ଆଖିଫାଡ଼ି ଅପାକୁ ଅନେଇଲା । ଅପା, ତୁ କ'ଣ ଏତେ ଅବୋଧ ଯେ ବୁଝି ପାରୁନାହୁଁ ତୋର ପ୍ରଶ୍ନ କେବଳ ଅବାନ୍ତର ନୁହେଁ, ସେଥିରେ ମୋର ରାଗିବା କଥା—ସତେ କି ତୁଇ ଏକା ବାପାଙ୍କର ଗେହ୍ଲା ଝିଅ ? ତୋରି କେବଳ ମନେ ପଡ଼ୁଛି ?···ଉତ୍ତର ଦେଉଛି ରହ । ବାପା ହଠାତ୍ ନିଉମୋନିଆରେ ମରିଗଲେ । ଦୁର୍ମୁଖ ଶେଷକଥା କହିବାକୁ ବେଳ ନଥିଲା । ବୋଉ ଛ' ମାସ ଆଗରୁ ନାନାଦି ରୋଗ ଭୋଗି ଭୋଗି ଚାଲି ଯାଇଥିଲି । ଦୁଇ ଜଣଯାକ ଶିଖାଶିଖି ହୋଇ ଆମକୁ ଅନାଥ କରି ଛାଡ଼ିଗଲେ । ଅର୍ଥ କଷ୍ଟ ନାହିଁ, ଜ୍ଞାତି କୁଟୁମ୍ବ ସହାନୁଭୂତିର ସୀମା ନାହିଁ, କିନ୍ତୁ ନନ୍ଦନକାନନ ପୋଡ଼ିଗଲା । ପୋଡ଼ିଗଲା, ସେତିକିବେଳୁ ଧୂଆଁ ଉଠୁଛି ଉଠୁଛି । ସରୁନାହିଁ । ପଚାରୁଛୁ କାହିଁକି ? ଦେଖେଇ ହେଉଛୁ ? ଫୁଲେଇ ହେଉଛୁ ? ସଞ୍ଜିତା ତାର ଗୃହାଣୀକୁ ଆହୁରି ଶକ୍ତ ମୁଠିଆଁ କରିବାକୁ ଚେଷ୍ଟାକଲା । ଅପା ଜାଣୁ···

"ରାଗୁଛୁ କାହିଁକି ? ମୁଁ ତୋତେ କିଛି ପଚାରୁ ନାହିଁ, ଖାଲି କହି ଯାଉଛି । ବାଧୁଛି ବୋଲି କହି ଯାଉଛି । ଶୁଣିବୁ ନାହିଁ ? ମୋର ଆଉ କିଏ ଅଛି ? କାହା ଆଗରେ କହିବି ?"

ଥାଉ, ସେତିକି ଥାଉ । ଆଖିରେ ଲୁହ ଆସିବା ଦରକାର ନାହିଁ । ଅର୍ଥହୀନ ଲୁହ ଆସିବାକୁ ହମହମ ହେବ, ଆସିବ, ଚାଲିଯିବ । କାହିଁକି ନା ରୁ ସେମିତି । ସରି, ନାଟକ ଜାରି ରହୁ । ଶୂନ୍ୟ ପ୍ରେକ୍ଷାଳୟରେ ପାଦ ପ୍ରଦୀପମାନେ ତୋ କଥା ଶୁଣିବା ପାଇଁ ଚହି ରହିଛନ୍ତି । ଝରକାବାଟେ ଦେଖିଲୁ, କେତେ ଆଲୁଅ, ଜଡ଼ ଚେତନାର ଜୁଳୁଜୁଳୁ ଆଲୁଅ । ହେଲେ ଜିତା ଲୁହ ପୋଛିବାକୁ ଯିବନାହିଁ । ଜିତା ମଧ୍ୟ ବାପର ଝିଅ । ଗେହ୍ଲା ଝିଅ, ସେ ଅଧିକାର ମୁଁ ତୋତେ ସଁପି ଦେଇ ପାରିବି ନାହିଁ ।

"ବାପା ବଞ୍ଚିଥିଲେ ମୋର କିଛି ଅଭାବ ନ ଥାନ୍ତା । ମୁଁ ତାଙ୍କର ସାଧାରଣ ଢ'ପଦ କଥା ଶୁଣି ତାଙ୍କ ମୁହଁକୁ ଚାହିଁ ମୋର ଏଇ ପୁରୁଷଟିକୁ ବୁଝିନେଇ

ଥାଆନ୍ତି, ଆଶ୍ୱାସନା ପାଇଥାଆନ୍ତି । ବାପାଙ୍କର ଭଲ ପାଇବା ନେଇ ସ୍ମାକୁ ସମ୍ପୂର୍ଣ୍ଣ ନଜର କରନେଇ ଥାଆନ୍ତି, କେଉଁଠି ଟିକେ ଫାଙ୍କ ନ ଥାନ୍ତା । ସେ ଅବଶ୍ୟ ମୋତେ ତାଙ୍କ ହିସାବରେ ପ୍ରେମ କରନ୍ତି···"

ସେ ଅବଶ୍ୟ ତୋତେ ପ୍ରେମ କରନ୍ତି । ତାହାହେଲେ ଏଇ ବାଗ୍ବଲତା କାହିଁକି ? ଏଇସ୍ତାକୁ କହନ୍ତି ଦୁଃଖର ବିଳାସ । ବୁର୍ଜୁଆ ପଣ । ମାର୍କସିଷ୍ଟ ବନ୍ଧମଙ୍କୁ ପଚ୍ଛର । ସେ କହିବ । ସେକସର ଅଧାବାଟରେ ମଧ୍ୟ ତା'ର ଭ୍ରାଷଣ ସରି ନ ଥିଲି । ଅନ୍ତିମ ବେଦନରେ ହଜିଗଲା । ସଞ୍ଚିତାର ଓଠରେ ବଙ୍କ ହସ ଉକୁଟି ଉଠିଥିଲା । ଅପାର ଆଖିରେ ପଡ଼ିଥିବ ବୋଲି ମନେ ହେଲା ନାହିଁ ।

"କିନ୍ତୁ ସେ ବାପାଙ୍କ ପରି ନୁହନ୍ତି । ତାଙ୍କୁ ଧରିହେବ ନାହିଁ । କଥାକୁ କହୁଛି—ତାଙ୍କର ଜୀବନସାରା ଆଉ ଗୋଟିଏ ସ୍ତ୍ରୀ ସାଙ୍ଗରେ ସମ୍ପର୍କ ଥିଲେ ମଧ୍ୟ ମୁଁ ଜାଣିପାରିବି ନାହିଁ ।"

ସଂଚିତା ଚେଇଁ ଉଠିଲା । ଅପା କ'ଣ କହୁଛି ? କ'ଣ କହିବାକୁ ଯାଉଛି ?

"ବାପାଙ୍କର ସବୁ ଧରାପଡ଼ିଯାଏ । ବୋଉତ ସହଜେ । ସେମାନେ ପିଲାଙ୍କ ପରି କଥା କଥାକେ ପସରା ମେଲିଦିଅନ୍ତି । ହସି କାନ୍ଦି ପାଟିଉଣ୍ଡ କଳିକଜିଆ କରି ଦରକାର ନ ଥିଲେ ମଧ୍ୟ ନିଜକୁ ଖୋଲି ଦିଅନ୍ତି । ମିଛାକୁ କାହିଁକି ଏମିତି କହିଲେ ବୋଲି ମନକୁ ଲାଗିଲେ ଅଧଘଣ୍ଟାଏ ନ ଯାଉଣୁ ଯୁଦ୍ଧ ଆରମ୍ଭ କରିଦିଅନ୍ତି । ଯୁଦ୍ଧରୁ କେତେ କ'ଣ ଘଟିଯାଏ । କେତେ ବାକ୍‌ବିତଣ୍ଡା, ଫୋପଡ଼ା ଫିଙ୍ଗା, ବେଳେବେଳେ ମନେହୁଏ ଯେ ସେମାନେ ପରସ୍ପରକୁ ଖୁନ୍ କରିଦେବେ । କିନ୍ତୁ କିଛି ସମୟ ପରେ ସେମାନେ ଆମର ଆଗରେ କୁଣ୍ଢାକୁଣ୍ଢି ହୋଇ (ସଞ୍ଚିତା ଲାଜେଇଲା ପରି ହସିଲା)....ମନେ ନାହିଁ ? ପାଟଣାରେ ଥିଲାବେଳେ ବାପା ନୂଆ ଚାକିରି କଲାବେଳେ । ବାପା କମ୍ପାନୀ କ୍ୱାର୍ଟର୍ସ ପାଇ ନ ଥିଲେ, ଆମେ ଦୁଇବଖୁରିଆ ସାନଂଘରେ ମେଞ୍ଚା ମେଞ୍ଚି ହୋଇ ଥିଲୁ—ତୁ ଅବଶ୍ୟ ସେତେବେଳେ ପିଲାଥିଲୁ । କ'ଣ ହେଲା ବୋଲି ପାଖ ପଡ଼ୋଶୀ ଶ୍ରୀବାସ୍ତବ ଫ୍ୟାମିଲି ମାଆବୁଢ଼ୀ ପିଲାକବିଲା ଧାଇଁ ମାଡ଼ିଆସିଲେ, କିନ୍ତୁ ସେତେବେଳକୁ ବାପା ବୋଉ ଶୋଇବା ଘରେ—"

ମନେ ନାହିଁ । କିନ୍ତୁ ସେଇ ପ୍ରଥମ ନୁହେଁ । କେତେଥର ଏମିତି ହୋଇଛି । ମୋର ମନେଅଛି । ବାପା ବୋଉଙ୍କ ଅଦ୍ଭୁତ କାରବାର ଦେଖି ମୁଁ ବାହାଧରି

କାନ୍ଦୁଥିଲି, ତୁ ମୋତେ ବଗିଚ୍ଛକୁ ଟାଣିନେଇ ଚଢ଼େଇ ଦେଖାଉଥିଲୁ । ମୋର ମନେଅଛି । ଅଳ୍ପ ବଡ଼ ହେଲାପରେ ଆମେ ଦୁହେଁ କାହିଁକି ଲଗି ହାତ ଧରାଧରି ହୋଇ ଲୁହ ଝରାଉଥିଲୁ । ଦୃଶ୍ୟର ସମାପ୍ତି ପରେ ଅଯାଚିତ ଚକୋଲେଟ୍ ପାଇ ଖୁସି ହେଉଥିଲୁ । ତା' ମଧ୍ୟ ମନେ ଅଛି ।

"ଦୁହେଁ ଏକାପରି ଥିଲେ । ବେଳେବେଳେ ଆକାଶରୁ ଝଡ଼ ବୋହୁଥିଲା; ପୃଥିବୀରୁ ଭୂମିକମ୍ପ ଉଠୁଥିଲା । କିନ୍ତୁ ଦୁହେଁ ସବୁଦିନେ ପରସ୍ପରକୁ ଅନେଇ ରହୁଥିଲେ । ଭଲମନ୍ଦ ଭଲ ପାଇବାରେ ବାନ୍ଧି ହୋଇଥିଲେ । ସେଇଥିଲାଗି ତ ବାପା ଛଅମାସ ଅପେକ୍ଷା କରିପାରିଲେନି ।"

ସଞ୍ଜିତା ନୀରବ ହୋଇ ରହିଥିଲା । ତା'ର ଯେମିତି କ'ଣ ମନେ ପଡ଼ୁଥିଲା । ଯାହା ସେ କେବେହେଲେ ସ୍ମୃତିରୁ ଲିଭେଇ ପାରିନାହିଁ ।

"ସେମାନଙ୍କ ମଝିରେ ଆଉ କିଛି କେହି ଆସିପାରି ନାହିଁ । ଅଫିସ କାମ ନୁହେଁ, କ୍ଲବ୍ ସାଙ୍ଗସାଥୀ ଏପରିକି ଆମେ ପିଲାଛୁଆ ମଧ୍ୟ ନଥିଲୁ । କିନ୍ତୁ କିତା, ମୋର କ'ଣ ହୋଇଛି ମୁଁ ବୁଝିପାରୁ ନାହିଁ । ଆମେ ଦୁହେଁ କ'ଣ ସତରେ ପରସ୍ପର ଠାରୁ ଭିନ୍ନ ? ଆମେ ଆକାଶ—ପୃଥିବୀ ନୁହେଁ, ଆଫ୍ରିକାର ଭୂଖଣ୍ଡ ଏସିଆର ଭୂଖଣ୍ଡ, ପାଖାପାଖି ଅଛୁ କିନ୍ତୁ କେହି କାହାକୁ ଦେଖି ପାରୁନୁ ?

ଅପା, ମୁଁ ତୋତେ କହିବ ନାହିଁ । ମୁଁ ପ୍ରେମର ଯେଉଁ ଚେହେରା ଦେଖିଛି, ତାକୁ କହିଲେ ତୋର ବାଲିଦେଉଳ ଭୁଷୁଡ଼ିଯିବ । ମନ ହେଉଛି କହିଦେବ । ତୋର ମିଛ ଦୁଃଖର ବେଲୁନ୍ ଫୁଟେଇ ଭୂତ ଧରେଇ ଦେବ । ନା, ପାରିବ ନାହିଁ, ତୁ ହେଉଛୁ ମୋର ଓଏସିସ୍, ତାତଲା ବାଲିର ଗୋଲାପି ସାଥୀ, ଗୋଟିଏ ବୃନ୍ତରେ –

"ବାପା ବୋଉଙ୍କ ମଝିରେ ପ୍ରତାରଣା ପରଦା ନ ଥିଲା ।"

ନା !! ଥିଲା । ସହସ୍ରବାର ଥିଲା । ମୁଁ ଦେଖିଛି, ମୁଁ ଶୁଣିଛି । ସେତେବେଳେ ତୁ ପାଖରେ ନଥିଲୁ । ହଷ୍ଟେଲରେ ପାଠ ପଢ଼ୁଥିଲୁ । ବାପା ବୋଉଙ୍କୁ ସାଙ୍ଗରେ ନେଇ ଟୁରରେ ଯାଉଥିଲେ । ଶ୍ୟାମଳ ସୁନ୍ଦର ବନଗହନର ଡାକବଙ୍ଗଳାରେ ଗ୍ୟାସ୍ ଲାଇଟ୍ ଆଉ ନେଳି ପୋକମାନଙ୍କ ସାମନାରେ ଯେଉଁ ଘଟଣା ଘଟିଲା ତାକୁ ମୁଁ ଦେଖିଛି, ତୁ ଦେଖିନୁ । ଅତୀତର ପୁନରାବୃତ୍ତି ନୁହେଁ, ଆଉରି କିଛି ।

ସେଇଠି ଯେଉଁ ରାକ୍ଷସୀ ଦାନ୍ତ ଗିଳିଦେଲେ, ସେମାନେ ଆଜି ମଧ୍ୟ ମୋତେ ଦାନ୍ତ ଗିଳୁଛନ୍ତି । ମୋତେ ଆଉ ମୋର ଆର୍ଟକୁ ରଖେଇ ଥୋଇ ଦେଉ ନାହାନ୍ତି ।

ବାପା ବୋଉଙ୍କ ମଝିରେ ଆଉ ଜଣେ ଥିଲା । ଜଣେ ନା ଦୁଇଜଣ ? ନା ଆହୁରି କେତେ, କିଏ ଜାଣିଛୁ ? କଳିକଜିଆ କରି ବିଷ ଉଦ୍‌ଗାରିଲା ବେଳେ ସେମାନେ ଯାହା କହିଲେ ଶୁଣିବୁ ? ସହିପାରିବୁ ? ସେମାନେ ମୋତେ ସାକ୍ଷୀକରି ବୀର ଦର୍ପରେ ଘୋଷଣା କଲେ ଯେ ଅନ୍ୟମାନେ ଗୋପନରେ ତାଙ୍କ ଜୀବନ ଭିତରକୁ ଆସିଛନ୍ତି, ନାଁ ଧରି କହିଲେ (ସେଇ ଲୋକମାନଙ୍କୁ ମୁଁ ଜାଣିଛି, କେଜାଣି କାହିଁକି ସବୁଦିନେ ଘୃଣାକରି ଆସିଛି)···ତା'ପରେ ବାପା ବୋଉ ପ୍ରେମର କାନ୍ଦଣା କାନ୍ଦି ଏକାଠି ହୋଇଗଲେ । ଅବାନ୍ତର ।

ସେମାନେ ବଞ୍ଚିଛନ୍ତି । କିନ୍ତୁ ବାପା ବୋଉ ମରିଯାଇଛନ୍ତି ।

ହଠାତ୍ ସସ୍ମିତା କଷ୍ଟ ପାଇଲା ପରି ମନେହେଲା । ବୋଧେହୁଏ ତା'ର ପେଟରେଥିବା ପିଲା ତାକୁ ଠେଲୁଛି । ସସ୍ମିତା ଅପାର ହାତକୁ ଧରି ଆଉଁସିବାକୁ ଲାଗିଲା । ଅପା, ମୁଁ ତୋତେ କଷ୍ଟ ଦେବି ନାହିଁ, ନଜେ କୁହୁଳୁଥିବି କିନ୍ତୁ ତୋତେ କଷ୍ଟ ଦେବି ନାହିଁ ।

ସସ୍ମିତା ସାନ ଭଉଣୀର ଆଉଁସା ଆଶ୍ୱସନା ସ୍ୱୀକାର କଲାପରି ଆଖିବୁଜି ଆଣିଲା । କହିଲା, "ମୁଁ ଏଣ୍ଟୁତେଣ୍ଟୁ କ'ଣ କହିଲି ଭୁଲିଯାଆ । ଆମେ ଦୁଇଜଣ ପ୍ରକୃତରେ ପରସ୍ପରକୁ ଭଲ ପାଉ । ସବୁ ମୋର ଦୋଷ । ତାଙ୍କର ଆଜିକାଲି ବେଶୀ କାମ ପଡ଼ୁଛି, ସରକାର ଟେକ୍‌ସଟ ବହି ଛାପିବା ଉପରେ କ'ଣ କଟକଣା ଲଗେଇ ଦେଇଛନ୍ତି । ତା'ଛଡ଼ା ମୋର ଦେହପା, ଭଲ ରହୁନାହିଁ । ଏଣେ ଭଲ ରୋଷେଇଆଟିଏ ମିଳିବାକୁ ନାହିଁ । (ପୁଣି ପେଟରୁ କଷ୍ଟ ଉଠିଲା ପରି ଲାଗିଲା) ସେ ବାପାଙ୍କ ପରି ନୁହନ୍ତି, ସେଥିପାଇଁ ସେ କ'ଣ ଦାୟୀ ?

···ସବୁ ମୋର ଦୋଷ । ମୁଁ ବାପାଙ୍କୁ ଅତି ବେଶୀ ଭଲ ପାଉଥିଲି ।"

ଶେଷକଥା ମୁଁ କହିବି, ଏଇ ଭାବରେ ସସ୍ମିତା ବସେଇ ବସେଇ କହିଲା—

"ମୁଁ ମଧ୍ୟ ବାପାଙ୍କୁ ଅତି ଭଲ ପାଉଥିଲି ।"

ଫଚଚା କହିଲା ନାହିଁ ଯେ, ହୁଏତ ସେଇ ଦିନରେ ଦୃଶ୍ୟ ପରେ ସେ ବାପାଙ୍କୁ ଆହୁରି ଅଧିକ ଭଲ ପାଇଲା । କାରଣ ମନେ ହେଲା ଯେ, ବାପା ନିଜକୁ ଯେତିକି ନିର୍ମମ ସ୍ତବ୍ଧ୍ ଦେଇ ପାରିଲେ, ବୋଉ ପାରିଲା ନାହିଁ । ବୋଉ ଉଚ୍ଛ୍ଵାକୁ ବାହାଦୁରି ଦେଖାଇଲା, ମୁଁ ଆରକ ଦୁଷ୍ଟ । ବାପା ନିଜେ ନିଜକୁ ନିଶରେ ଚଢ଼େଇ ସୁନ୍ଦର ଦେଖାଗଲେ । କିନ୍ତୁ ବାପା ବାପା, ପୁରୁଷ ନୁହଁନ୍ତି ।

ସେଇଦିନଠାରୁ କ'ଣ ପୁରୁଷ ମୋ ପାଇଁ ଜାନୁଆର ପାଲଟିଗଲା, ନା ନିଜ ପାଇଁ ସେଇ ଗୋଟିଏ କାରଣ ଉଦାହରଣ ମିଳିଗଲା ଯେ ଫଚଚା ପୁରୁଷକୁ ଘୃଣା କରିବ, କରିବା ଉଚିତ ?

ଅପାର ନିମୀଳିତ ନୟନପ୍ରଶାନ୍ତ ବଦନକୁ ଦେଖି ତା'ର ଧାରଣା ହେଲା ଯେ, ସେଦିନର କଥା କହିଲେ ତା'ର ଚେତନାରେ ଢିଲେ ଆଞ୍ଚ ଲାଗି ନ ଆନ୍ତା । ତାକୁ ହାରିଗଲା ପରି ମନେ ହେଲା···ଡ୍ୟାମ୍ ଇଟ୍ ।

ଫଚଚା ନିଜକୁ ହାଲୁକା କରିବାପାଇଁ ଅପାର ବଢ଼ନ୍ତା ପେଟକୁ ଆଉଁସିଲା । କହିଲା—"ଆଉ କେତେ ମାସ ରହିଲା ? "

"କେଜାଣି, ଆଚ୍ଛା କହିଲୁ ପୁଅ ହେବ ନା ଝିଅ ହେବ !"

"ଝିଅ ।" ଫଚଚା ପାଟିରୁ ଚଟ୍‌କରି ବାହାରି ଆସିଲା ।

"କଲେ କାହିଁକି ?" ସସ୍ମିତା ଆଖି ଖୋଲି ପଚାରିଲା ।

"କହିଁକି ନା, ଝିଅ ହେଲେ ସେ ତୋରି ପରି ହେବ ।" ଝିଅ ହେଲେ ସେ ତୋରିପରି ହେବ ସିନା ମୁଁ ତାକୁ ପୁରାପୂରି ନେଇପାରିବି । କୁଆ ପଥର ମାଡ଼ିକି ଡରି ମୋ ଦେହକୁ ଲାଗି ଶୋଇଲା ବେଳେ ତାକୁ···ସୁନା କନିଆଁକୁ କେଉଁ ସମାଜ ମଣିଷ ପୁରୁଷ ମୋଠାରୁ ଛଡ଼େଇ ନେଇ ପାରିବେ ନାହିଁ ।



# ଗୁରୁ ଦକ୍ଷିଣା

"ସାଓବୋନା—"

"ୟେ—ବୋ—"

କୃଷକାୟ କଳା ମୁହଁରେ ଧଳା ଦାନ୍ତ ଦୁଇପାଟି ହସିଉଠିଲେ । ପାଖରେ ପହଞ୍ଚିଲି ବେଳକୁ ହସ ଗନ୍ଧେଇଲା, କାରଣ ଗତକାଲିର ମଦ ସକାଳୁ ସକାଳୁ ଉଡ଼ିଯାଇ ପାରି ନ ଥିଲା । ଯାହାହେଉ ଅର୍ଦ୍ଧନଗ୍ନ ମଣିଷଟି ପ୍ରକୃତରେ ଖୁସି ହେଲା, ତା'ର ପରିଧେୟ ଜନ୍ତୁଚମଡ଼ାର ଲଙ୍ଗୁଳ ଆନନ୍ଦରେ ଫଡ ଫଡ଼ ହେଲାପରି ମନେହେଲା ଏବଂ ମୁଁ କୃତ୍ୟାକୃତ୍ୟ ହେଲି । ମୁଁ କହୁନାହିଁ ଯେ ଅନ୍ୟାନ୍ୟ ବିଦେଶୀ ବିଶେଷଜ୍ଞ ଗ୍ରସ୍ତାଘାଟରେ ଏଭଳି ଜଣେ ଆଦିମ ସ୍ୱାଜିର "ସାଓବୋଣନା" (ସ୍ୱାଗତ) ସମ୍ଭାଷଣରେ ଉତ୍ତର ସ୍ୱରୂପ "ୟେ ବୋ" (ହଁ, ଧନ୍ୟବାଦ, ମୁଁ ଗ୍ରହଣ କଲି) ଉଚ୍ଚାରଣ କରୁ ନ ଥିବେ । କିନ୍ତୁ ମୋପରି ଉଚ୍ଚାରଣ କରୁଥିବେ କି ? ଫୁଲି ଉଠୁଥିବା ଅଲସୁଆ ଓଠେଉ ପରି ଲମ୍ବେଇ ଲମ୍ବେଇ ଦୋସରା ମଣିଷକୁ ନିଜଲୋକ ମନେକରି ତା' ମୁହଁକୁ ସମ୍ପୃକ୍ତ ୟେ-ବୋ କରିପାରୁଥିବେ କି ? ପାରୁ ନ ଥିବେ । ସେମାନଙ୍କ ଜାତିଗତ ଅହଙ୍କାର ଉଚ୍ଚମନ୍ୟତା କାହିଁରେ କଅଣ । ତା'ରି ବିଷରେ ୟେବୋର ଆତ୍ମା ଶୁଖିଯାଏ, ଶବ୍ଦ ଅନ୍ତଃସାରଶୂନ୍ୟ ଖୋଳପା ପରି ସ୍ୱାଜିର ଦେହରେ ବାଜି ଫେରିଆସେ । ସ୍ୱାଜି ନିବୃତ୍ତ ନୀରବ ହୋଇ ବାଟ ଚାଲେ । ଅଥଚ ମୁଁ ଯେତେବେଳେ ୟେବୋ କୁହେ ସେ 'ହୁନ୍‌ଜାମି', ଆସିଛ ମୋ ବନ୍ଧୁ, ଆଉ କଅଣ ଖବର ବୋଲି ବାର୍ତ୍ତାଳାପ ଆରମ୍ଭ କରିଦିଏ । ଇଂରେଜ ଗୋରା ମିଷ୍ଟର ରସେଲ୍‌, ଆଫ୍ରିକାନର ଗୋରା ମିଷ୍ଟର ଭୋଅର୍‌, ଜର୍ମାନ ଗୋରା ମିଷ୍ଟର ଓ୍ୱାଲଟର, ଡଚ୍‌ ଗୋରା ମିଷ୍ଟର ହେସ୍‌କେସ୍‌, ଶ୍ରୀ ଲଙ୍କାଶ୍ୟାମଳ, ଶ୍ରୀ ଅମରସିଂଘେ ଏପରିକି ଭାରତଶ୍ୟାମଳ ଶ୍ରୀ ମାଲହୋତ୍ରା—ତୁମେମାନେ କ'ଣ କେବେ ସ୍ୱାଜି ହୃଦୟର ଏତେବାଟକୁ ଆସିପାରିଛ ? ପାରିବ ନାହିଁ । କାରଣ ତୁମର ତଥାକଥିତ ସଭ୍ୟତା ପାକଳ ହୋଇନାହିଁ, ସଭ୍ୟ ଦେଶରୁ ବିଶେଷଜ୍ଞ ହୋଇ ଏମାନଙ୍କୁ ଉଦ୍ଧାର କରିବାକୁ ଆସିଛ ବୋଲି ତୁମର ଧାରଣା, ତୁମେ ଡରୁଛ, ବିମୋହିତ ହେବାର ସାହସ ନାହିଁ··· ମିଷ୍ଟର ମାଲହୋତ୍ରା, ତୁମେ ଅବଶ୍ୟ ଭାରତୀୟ, କିନ୍ତୁ ତୁମର ସଂସ୍କୃତ ପଶ୍ଚିମମୁହାଁ ହୋଇ ବିଗିଡ଼ି ଯାଇଛି । ଆଃ ! ସିସ୍ୱାଠି ଭାଷାରେ ଦଖଲ ଥିଲେ ମୁଁ ହୁନ୍‌ଜାମି ପଛକୁ ଆଉ କେତେପଦ ଯୋଡ଼ିଦେଇ ଯଥାକ୍ରମେ ତା'ର କୁଡ଼ିଆ ଘରେ ମକା-ଅଟା ଜାଉ ସେବନ କରିବାର ନିମନ୍ତ୍ରଣ ପାଇପାରନ୍ତି । ହଉ, ବେଳ କଅଣ

ପଳଉଛ ? ମାତ୍ର ଛଅମାସ ହୋଇଛ, ଆହୁରି ଅଢ଼େଇ ବର୍ଷ ବାକି ଅଛ, ଭାଗ୍ୟରେ ଥିଲେ ଆହୁରି ଗୋଟିଏ କଣ୍ଟ୍ରାକ୍ଟ...

ମାସେ ହେଉ ବର୍ଷେ ହେଉ ମନେରଖିବାକୁ ହେବ ଯେ ତୁମେ କେବଳ ବିଶେଷଜ୍ଞ ନୁହଁ, ସନାତନ ସଭ୍ୟତାର ପ୍ରତିନିଧି, ଆଧୁନିକ ଆସନ୍ନାକାଳର ଦାଉଁଡ଼ିବନ୍ଧ, ବିଚିତ୍ରବହୁଳ, ଏକ ଏବଂ ଅନେକ । ତୁମେ ଭାରତ । ବନ୍ଦିତ । ତୁମେ ବିଶେଷଜ୍ଞ । ହଜାର ହଜାର ବର୍ଷ ଧରି ଏତେ କଥା ଜାଣିଛ, ଶିଖିଛ, ଅଙ୍ଗେ ନିଭେଇଛ । ସଚେତନ ମନରେ ଯାହା ଜାଣିନାହିଁ ବୋଲି ମନେହେଉଛ ତା'ର ମଳଦର୍ଶନ ତୁମର ଅଚେତନ ମନରେ ଠେଲି ହେଉଛି, ଆପେ ଆପେ ବୁଦ୍ଧି ବଢେଇ ଦେବ । ସାନ ସ୍ୱାଜିର ଭୋକ ମେଣ୍ଟାଇ ଦେଇପାରିବ ।

ସାନ ସ୍ୱାଜି ବୋଲି କହିଲି ସିନା, ପ୍ରକୃତରେ ସ୍ୱାଜିର ଚେହେରା ଲମ୍ବା ଚଉଡ଼ା । ବଡ଼ମୁଣ୍ଡରେ ଥିବା ଶ୍ରେଷ୍ଠ କୁଞ୍ଚୁ କୁଞ୍ଚୁଆ ବାଳ ମୁଣ୍ଡର ବଡ଼ପଣକୁ ଦ୍ୱିଗୁଣିତ କରେ । ସ୍ୱାଜି ସ୍ତ୍ରୀର ମୁଣ୍ଡ ଛଡ଼ା ଅନ୍ୟାନ୍ୟ ବଡ଼ ବଡ଼ ଅଂଶ ଏତେ ଓଜନିଆ ମନେହୁଏ ଯେ ଛପୁଲା ପୃଥିବୀକୁ ସତେ ଅନୁଭବ କରିହୁଏ । କିନ୍ତୁ ଦେଶଟି ନିହାତି ସାନ, ଆୟତନ ଭାରତର ଗୋଟିଏ ମଧ୍ୟବର୍ଗ ଜିଲ୍ଲା ସମାନ, ଲୋକସଂଖ୍ୟା ପାଞ୍ଚଲକ୍ଷରୁ ଅଧିକ ନୁହେଁ ଏବଂ କଳା ମୁହଁରେ ସ୍ୱଚ୍ଛ ସରଳ ତରତର ଗୃହାଣୀର ଜିଜ୍ଞାସା... ଆମେ ମାତ୍ର ଆଠବର୍ଷ ହେଲା ସ୍ୱାଧୀନ ହୋଇଛୁ, ମଣିଷ ବୋଲି ଗଣାହେଉଛୁ, ଆମର ଭାଷା ଅଛି ଲିପି ନାହିଁ, ରଜା ଅଛି, ପାର୍ଲିଆ-ମେଣ୍ଟ ଅଛି, ଦପ୍ତର ଅଛି, ସ୍ୱାଭିମାନ ଅଛି କିନ୍ତୁ କେମିତି କ'ଣ କରିବାକୁ ହେବ ଆମକୁ ଜଣାନାହିଁ । ତୁମେ ଆସିଛ ବିଶେଷଜ୍ଞ, ତୁମକୁ ଆମେ ପ୍ରଶ୍ନ ପଚାରିବୁ, ପଚାରି ପଚାରି ଅଥୟ କରିଦେବୁ, ଆମକୁ ହୁରୁଡ଼େଇ ଦେବନାହିଁ ପ୍ଲିଜ୍ !

ବଡ଼ ଚେହେରା ସାନ ହୋଇ ଦିଶିଯାଏ । କହିବାକୁ ମନହୁଏ—ବାଲୁତ ଶିଶୁ, ମୁଁ ତୋତେ କେତେ ଦେବି କେମିତି ଦେବି କହିଲୁ ? ନାଇଁ ନାଇଁ, ମୁଁ ଆହୁରି ନଇଁ ଆସିବି, ସେଇ ହେଉଛି ମୋର ବଡ଼ପଣର ପରୀକ୍ଷା ।

ଆଫ୍ରିକାର ପୂର୍ବାଞ୍ଚଳରେ ଭାରତୀୟମାନେ ବେପାର କରିବାକୁ ଆସି ଲାଭ ଉଠାଇଛନ୍ତି, ଅ.ଦମ ଲୋକମାନେ ସେମାନଙ୍କୁ ଭାଇ-ଭାଇ ବୋଲି ମାନିନେଇ ପାରିନାହାନ୍ତି । ଦକ୍ଷିଣ ଆଫ୍ରିକାର ଗୋରା-କଳା ବାଦବିବାଦରେ ଭାରତୀୟମାନେ ଶିଙ୍ଗି ଯାଇଛନ୍ତି, ଆପଣାର ବର୍ଣ୍ଣ ଅଥବା ଧର୍ମ ଠଉରେଇ ପାରିନାହାନ୍ତି । କିନ୍ତୁ ଆମର ଏଇ ସ୍ୱାଜିଲଣ୍ଡରେ ସେ ସବୁ ଅସୁବିଧା ନାହିଁ । ଏଠି ଭାରତୀୟମାନେ

କେବଳ ବିଶେଷଜ୍ଞ ହୋଇ ସାମାନ୍ୟ ବେତନ ନେଇ (ହୋଇପାରେ ଭାରତ ଅନୁପାତରେ ଯଥେଷ୍ଟ ଅଧିକ) ସ୍ୱାଳିକୁ କାମ ଶିଖେଇବାକୁ ଆସିଛନ୍ତି । ଏଇଠି ଭାରତର ସ୍ୱର୍ଣ୍ଣକମଳ ଯଥାର୍ଥରେ ଫୁଟିଉଠିବା ଉଚିତ । ଏଇଠି ଭାରତ ସ୍ୱଚ୍ଛନ୍ଦରେ ବ୍ୟକ୍ତ ବିମୀତ ହୋଇ···କିନ୍ତୁ ହାୟ୍ ! ଏଠି ମାଲହୋତ୍ରାଙ୍କ ପରି ଲୋକ ଅଛନ୍ତି । କେବଳ ମାଲହୋତ୍ରା କାହିଁକି, ପ୍ରସାଦ, ବାସୁ, ସଦାଶିବନ, ଏମାନେ ମଧ୍ୟ ମହାଭାରତକୁ ଉପସ୍ଥାପିତ କରିପାରି ନାହାନ୍ତି । ଅଫିସରେ ଲମ୍ବା ଲମ୍ବା ନୋଟ୍ ଲେଖି ଇଂରେଜୀ ଭାଷାର ମାନ ବଢ଼େଇଲେ କ'ଣ ଭାରତୀୟ ବିଶେଷଜ୍ଞଙ୍କର କାମ ସରିଗଲା ? ନା, ସ୍ୱାଳିମାନଙ୍କୁ ଘରକୁ ଡାକିଆଣି ବିଅର ସହିତ ବଡ଼ା ପାମ୍ପଡ଼ ଦହିବଡ଼ା ଇତ୍ୟାଦି ଖୁଆଇଲେ ସାଂସ୍କୃତିକ ଦାୟିତ୍ୱ ତୁଟିଗଲା ? ବାବୁ, ଭାରତ ବୋଲଇବା ଏତେ ସହଜ ନୁହେଁ । ଏଭଳି ଶାନ୍ତମୂର୍ତ୍ତ ବିମୀତ ହୋଇ ପାଠ ପଢ଼େଇବାକୁ ହେବ ଯେ ସ୍ୱାଳିର ମନେହେବ ସେ ହିମାଳୟର ପାଦ-ଦେଶରେ କିମ୍ବା ମହୋଦଧିର ବେଳାଭୂମିରେ ଛିଡ଼ା ହୋଇଛି—ତହିଁକୁ ସିଡ଼ି ନାହିଁ କି ସେତୁ ନାହିଁ ।

ଧରି ଏଇ ବାସୁ ଭଦ୍ରଲୋକ । ଜାତିସଂଘ ତରଫରୁ ଶିକ୍ଷା ବିଭାଗରେ ବିଶେଷଜ୍ଞ ହୋଇ ଆସିଛନ୍ତି । ସେଦିନ ଟ୍ରେଡ଼ପରି ଆମ ଘରେ ପହଞ୍ଚି କହିଲେ "ଆଜ୍ଞା; ମୋର ଆଜି ରାଗ ବଢ଼ିଗଲା ।" ମୁଁ ମନେମନେ କହିଲି ହଁ, ମୁଁ ଦେଖି ପାରୁଛି, ଆପଣଙ୍କର ଅନାଧୁନିଆ ଗ୍ରିବ ଚେନ୍ ଘୁରେଇବା ଢଙ୍ଗରୁ ବୁଝିପାରୁଛି ଯେ ରାଗ ଚଢ଼ି କରି ରହିଛି, ଉତୁରି ପାରିନାହିଁ । ଅର୍ଥାତ ଗ୍ରେଟ ଠିକଣା ଜାଗାରେ ବାଜିଲା ନାହିଁ । କ'ଣ ହେଲା ? ଅପରେକ ଗୋରା ବିଶେଷଜ୍ଞ ? ପୁଲିସ୍ ? ନା, ପର୍ତ୍ତୁଗୀଜ୍ ପରିବା ଦୋକାନୀ ଯାହାର ଇଂରେଜୀ ଓ ଦରଦାମ୍ ଉଭୟ ଅସହ୍ୟ ?

ମୁଁ ଆଶ୍ଚର୍ଯ୍ୟ ହେଲି ଯେତେବେଳେ ସେ କହିଲେ ଯେ କ୍ରୋଧର ପାତ୍ର ହେଉଛି ଜଣେ ଗ୍ରାଜୁଏଟ୍ ସୁଟ୍‌ପିନ୍ଧା ସ୍ୱାଳି । ସ୍ୱାଳି ପ୍ରଶ୍ନ ପଚାରିଲା—"ଆପଣଙ୍କ ଦେଶରେ କ'ଣ ଲୋକମାନେ ତଥାପି ଖାଇବାକୁ ନପାଇ ମରୁଛନ୍ତି ? ବାସୁ ଅବିଶ୍ୱାସ ଭଙ୍ଗୀରେ ପ୍ରଶ୍ନକୁ ଓଲଟେଇଲେ, "ମରୁଛନ୍ତି ?" ସ୍ୱାଳି ହୋମଓ୍ୱାର୍କ କରିଥିବା ଛାତ୍ର ପରି ଦାନ୍ତ ଖିଜିଡ଼ି କହିଲା, "ହଁ, ମରୁଛନ୍ତି, ମୁଁ ସେଦିନ କାଗଜରେ ପଢ଼ିଲି ।" ସେଇଠୁ ବାସୁଙ୍କର ରାଗ ବଢ଼ିଲା । କହିଲେ, "କେଉଁ କାଗଜ ? ସାଉଥ୍ ଆଫ୍ରିକାର କାଗଜ ? (ହେଁ ହେଁ) ହଁ, ତୁମର ଆଉ କେଉଁ କାଗଜ ଅଛି କି ? ସାଉଥ୍ ଆଫ୍ରିକାର ଅନୁଗ୍ରହରୁ ତୁମେ ବଞ୍ଚିରହିଛ,

ଦୁଧ କଦଳୀ ଖାଉଛ । ନହେଲେ ତୁମର ଅବସ୍ଥା ବାରଗଣ୍ଡା ଦ'କଡ଼ା ହୋଇ ସାରନ୍ତାଣି । କିନ୍ତୁ ଆମେ······ଆମେ ମଲେ ମଶରୁ ପଛେ କାହାରିକୁ ହାତ ପତେଇବୁ ନାହିଁ, ମଲେ ମଶରୁ ପଛେ······।" ସ୍ୱାନ୍ କୁଆଡ଼େ ତଥାପି ଦାନ୍ତ ଗିଜିଡ଼ିବା ଅବସ୍ଥାରେ ଛିଡ଼ାହୋଇ ରହିଲା, ସତେକି ମଲେ ମଶବାର ମନୋହର କାହାଣୀକୁ ଶେଷଯାଏଁ ଶୁଣିବାକୁ ଚାହେଁ । ବାସୁଙ୍କର ଇଚ୍ଛା ହେଉଥିଲା ତାକୁ ଅନାର୍ଯ୍ୟ ଇଡିଅଟ୍ ବୋଲି କହିବେ । ସେ କହିଲେ ନାହିଁ, କାରଣ ପ୍ରଶ୍ନକର୍ତ୍ତାର ସାଙ୍ଗିଆ "ଲମିଜା" । ଲମିଜାମାନେ ରଜାଙ୍କର ନିଜ ଗୋଷ୍ଠୀର ଲୋକ, ସରକାରୀ ପଦ ଅନୁଯାୟୀ ବିଶେଷ କ୍ଷମତା ଥାଉ ବା ନ ଥାଉ ସେମାନେ ଏ ଦେଶର ବ୍ରାହ୍ମଣ, ତେଣୁ ବାସୁ ତାକୁ ଅନାର୍ଯ୍ୟ ଇଡିଅଟ୍ ନ କହି ବୁଦ୍ଧିମାନର କାର୍ଯ୍ୟ କରିଛନ୍ତି । କି ମୋଟ ଉପରେ ସେଯାଏଁ କଥା ଗଲା କାହିଁକି ? ସ୍ୱାନ୍ ଯାହା କହିଲା ସେଥିରେ ବିଚଳିତ ହେବାର କଅଣ ଅଛି ? କାହିଁକି ଏଭଳି ଦୁର୍ବଳୋଚିତ କ୍ରୋଧ ? ପ୍ରତିରକ୍ଷା, ସଫେଇ ?

ମୋତେ ଜଣେ ଏଇ ଧରଣର ପ୍ରଶ୍ନ ପଚାରିଥିଲା । ସେ ମଧ୍ୟ ଜଣେ ଶିକ୍ଷିତ ସ୍ୱାନ୍ । ଗ୍ରାଜୁଏଟ୍ ନହେଲେ ମଧ୍ୟ ସିନିଅର କେମ୍ବ୍ରିଜ୍ । ପଚାରିଲା, "ଆପଣଙ୍କ ଦେଶ କ'ଣ ଆମଠାରୁ ଗରିବ ? ମୁଣ୍ଡପିଛା ଆୟ ବର୍ଷକୁ ନବେ ଡଲର ? ଆମଠାରୁ କମ୍ ? ଆମ ଅଫିସ୍‌ର ମିଷ୍ଟର ଉଇଲସନ କହୁଥିଲେ ଯେ ମୁଁ ବିଶ୍ୱାସ କଲିନାହିଁ···।" ତା' ପ୍ରଶ୍ନର ଉତ୍ତରରେ ମୁଁ ବିନୀତ ହୋଇ ଧୀରେ ଧୀରେ କହିଲି, "ସତ । ଆମେ ଗରିବ । ଆମେ ମଧ୍ୟ ବଡ଼ଲୋକ । ହାରାହାରି ସାଧାରଣ ମଣିଷ, ମାଟି ଗୋଡ଼ି । ହାରାହାରି ନବେ ଡଲାର । ବୁଝି ପାରିଲେ ? (ସେ ଆଦୌ ବୁଝିପାରିଲା ପରି ମନେହେଲା ନାହିଁ )···ପର୍ବତ ହାରାହାରି ନୁହେଁ, ନୀଳହ୍ରଦ ନୁହେଁ, ଧୂ ଧୂ ବାଲି ନୁହେଁ, କାଳିଆ କାଦୁଅ ନୁହେଁ । ଆମର ସବୁ ଅଛି, ସବୁକୁ ମିଶେଇଲେ ସୌନ୍ଦର୍ଯ୍ୟ, ବାଣ୍ଟି ଦେଲେ ସାମାନ୍ୟ ଷ୍ଟାଟିସ୍‌ଟିକ୍‌ସ । ନବେ ଡଲର । (ଏଥର କିଛି ନ ବୁଝିଲେ ମଧ୍ୟ କିମ୍ବା ନ ବୁଝିଲା ହେତୁ ତାର ମୁହଁ ଉଜ୍ଜ୍ୱଳ ଦିଶିଲା, ମୁଁ ଉତ୍ତେଜିତ ହେଲି) ହାରାହାରିକୁ ଭୁଲିଯାଇ ସମଗ୍ର ସୁନ୍ଦରକୁ ଦେଖି, ସୁନ୍ଦର ତଥା ସାହିତ୍ୟ, ଫିଲସଫି···ଆଃ !" ମୁଁ ଆଖି ବୁଜିଆଣିଲି । ପଦୁଟିଏ ପଦୁଟିଏ କରି କହିବାକୁ ଲାଗିଲି—

ବିବିଧ···

ବିଭିନ୍ନ···

ବିଚିତ୍ର···

ଗରିବ ବୋଲି କେତେ ତଳିଆ ଗରିବ, କେତେ କିସମର ଗରିବ···

ବଡ଼ ଲୋକ ବୋଲି କେତେ ଉଞ୍ଚ କଡ଼ଲୋକ, କେତେ ଭଲ ବଡ଼ଲୋକ···

କେତେ ଭଲ ପୁରୁଷ, କେତେ ଭଲ ସ୍ତ୍ରୀ—

ଆଖି ଖୋଲି ତା'ର ବିଧ୍ୱସ୍ତ ବିମୁଗ୍ଧ ଗୃହିଣୀକୁ ଦେଖିଲି, ଦେଖି ଭୟ ଲାଗିଲା । ସତେ କି ସେ କହୁଛି ମୁଁ ତୁମଠାରୁ ଏତେ ଅଧିକ ନେଇପାରିବି ନାହିଁ, ପାରିବି ନାହିଁ, ସାବଧାନ, ମୁଁ ତୁମକୁ— । ବିଶ୍ୱରୂପ ଦର୍ଶନ ପରେ ଅର୍ଜ୍ଜୁନଙ୍କ ଚେହେରା ଦେଖି ଶ୍ରୀକୃଷ୍ଣଙ୍କୁ ଏମିତି ଭୟ ଲାଗିଥିବ ପରା ।

ଯାହାହେଉ ସେଇ ଦିନଠାରୁ ମୋର ଉତ୍ତରଦାୟିତ୍ୱ ବଢ଼ିଗଲା । ଅଫିସ୍‌ରେ, ବାଟରେ, ଘାଟରେ କେଉଁଠି ହେଲେ ଆମଦେଶର କଥା ପଡ଼ିଲେ ମୁଁ ଆଗରୁହିଁ ଉତ୍ତର ଦେଲି, ନମ୍ର ନଇଁ ହୋଇ ଭାରତଭୂମିର ତତ୍ତ୍ୱଟିଏ ରହସ୍ୟଟିଏ ବତାଇବାକୁ ଲାଗିଲି । ସ୍ଥିର କଲି ଯେ ଇଂଲଣ୍ଡରେ ଥିବାଯାଏ ଏଇ ହେଉଛି ମୋର ଧର୍ମ କର୍ମ ଧାରଣା, ଅନ୍ୟ ଗତି ନାହିଁ । ଅନ୍ୟ ବିଦେଶୀମାନେ ମଉଜ କରନ୍ତୁ, ଭାସି ଯାଆନ୍ତୁ; ମୋର ପଥ ଭିନ୍ନ ।

ଅନେକ ଦିନଯାଏ ତାକୁ ଦେଖିଲି ନାହିଁ । ଅବଶ୍ୟ ଫେରିବା ପୂର୍ବରୁ··· କିନ୍ତୁ ସେ କଥା ପରେ । ଆଶ୍ଚର୍ଯ୍ୟ ହେଲି । ରାଜଧାନୀ ଆମ୍ବାବାନ୍ ଭଳି ଛୋଟ ସହରଟିରେ ଥରେ ଦେଖା ହୋଇଥିବା ଶିକ୍ଷିତ ଇଂରାଜ ଜଣକ ଆଉ ଥରେ ଆଖିରେ ପଡ଼ୁନାହିଁ କେମିତି ? ପ୍ରମାଦ ଗଣିଲି । ସିନିଅର କେମ୍ବ୍ରିଜ ପରେ ରାଜବୃତ୍ତି ପାଇ ବିଲାତ ଆମେରିକା ପଳେଇନାହିଁ ତ ? ତାହାହେଲେ କ'ଣ ମୁଁ ଥିବା ଭିତରେ ତା' ସାଙ୍ଗରେ ଆଉ ମୋଟେ ଭେଟ ହେବ ନାହିଁ ? ଭେଟ ହେଲେ ମଧ୍ୟ ସେ ହୁଏତ ଗ୍ରାଜୁଏଟ୍ ହୋଇ ଫେରିଥିବ, ପୂର୍ବପରି କଥଣ ମୋର ଉତ୍ତରକୁ ଗ୍ରହଣ କରିପାରିବ ? ସେମିତି ମୋତେ ଭୟ ଦେଖାଇ ସୁଖୀ କରାଇ ପାରିବ ?

ଛଅମାସରୁ ବର୍ଷେ ହେବାକୁ ବସିଲା । ମୁଁ "ହ୍ୟୁନ୍‌ଜାମିର" ପରବର୍ତ୍ତୀ ଦୀର୍ଘସୂତ୍ରୀ ପଦଗୁଡ଼ିକ ପଇଟିପାରିଲି ନାହିଁ । ଯେତେବେଳେ ଯାହାକୁ ପଚାରିଲି ସେ ହସି ହସି କ'ଣ କହିଲା ମୁଁ ଧରିପାରିଲି ନାହିଁ । ଜଣେ ଯାହା କହିଲା ଆଉ ଜଣକ ସାଙ୍ଗରେ ମିଶିଲା ନାହିଁ । ବୁଝିଲି ଯେ ଅତିଶକ୍ତ କୁଶଳ ସମ୍ଭାଷଣ ସବୁ କ୍ଷେତ୍ରରେ ସମାନ ନୁହେଁ, ସେଥିରେ ଜାତିଭେଦ ଅଛି । ଜାତିଭେଦ । ମୋତେ ଖୁସି ଲାଗିଲା । ଭାବିଲି ଭାରତର ଜାତିଭେଦ ନେଇ କେହି କିଛି ପ୍ରଶ୍ନ ପଚାରିଲେ

ମୁଁ ଉତ୍ତର ସହିତ ଉଦାହରଣ ଦେଇପାରିବି । ଯାହାହେଉ ମୁଁ "ମୁନ୍‌ଜାମି' ଠେଇଁ ଅଟକି ଗଲି । ହେଉ, ମୁଁ ଏତେ ଆଗ୍ରହରେ ଜାଣିବାକୁ ଚାହୁଁଛି ସେଇ କ'ଣ ଯଥେଷ୍ଟ ନୁହେଁ ? ସେମାନେ ଯଥାସାଧ୍ୟ ମୋତେ ତାଙ୍କ ସିଦ୍ଧାନ୍ତ ଭାଷାର ମୂଳର ଶିଖେଇବାକୁ ଚେଷ୍ଟା କରୁଛନ୍ତି । ଏହା କ'ଣ ଆତ୍ମୀୟତାର ନିଦର୍ଶନ ନୁହେଁ ?

ତେବେ ସେମାନେ ଏତେ ହସୁଛନ୍ତି କାହିଁକି ?

ନିଜକୁ କହିଲି ଯେ ସେମାନେ କଥା କଥାକେ ହସନ୍ତି, ସେଥିରେ ବିବ୍ରତ ହେବାର କିଛି ନାହିଁ । ସ୍ୱାଜ ସଦା ପ୍ରସନ୍ନ ।

ପ୍ରସନ୍ନ ହୋଇ ରହିବାକୁ କେହି ମନା କରୁନାହିଁ । ଆମର ରାମ, କୃଷ୍ଣ, ପ୍ରଧାନମନ୍ତ୍ରୀ ଓଗେର ଆଦର୍ଶ ପୁରୁଷମାନଙ୍କର ଚେହେରାରେ ପ୍ରସନ୍ନତା ବସା ବାନ୍ଧିଛି । ସେଇମାନଙ୍କୁ ସ୍ମରଣ କରି ଆମର ଜୀବନ ଦୁଃଖମୟ ହେଲେ ହେଉ ପଲକେ ଅମୃତ ଆଡ଼କୁ ଗତି କରୁଛି । ନିର୍ବିଘ୍ନରେ ଦୁଇତିନି ଘଣ୍ଟା ସମୟ ପାଇଲେ ମୁଁ ଯେ କୌଣସି ସ୍ୱାଜକୁ ଏହି ମନସ୍ତତ୍ତ୍ୱର ମୂଳକଥା ବୁଝେଇ ଦେଇ ପାରିବି । କିନ୍ତୁ ପ୍ରସନ୍ନତାର ଅର୍ଥ ନୁହେଁ ଏଇ ଅହେତୁକ ଉତ୍‌ଫୁଲ୍ଲ ଉରୁବାପଣ । ନୁହେଁ ।

ମୁଁ ରାଗିବା ଲୋକ ନୁହେଁ । ମୁଁ ସେମାନଙ୍କର ହସଖିଆଁ ଭାବକୁ ସହିପାରୁ ନ ଥିଲି ସେ କଥା ନୁହେଁ । ଶୁକ୍ରବାର ଉପରବେଳା ଆମ ଅଫିସର ଲୋକମାନେ ଯେତେବେଳେ ଆସନ୍ତା ୱିକ୍‌ଏଣ୍ଡ୍‌ ଛୁଟି ଉପଲକ୍ଷ୍ୟରେ କାମଦାମ ବନ୍ଦ କରି ଟେବୁଲ୍ ଉପରେ ଚିକେନ୍‌ଫ୍ରାଏର ପସରା ମେଲାଇ ମଉଜ କରନ୍ତି ମୁଁ ସେଥିରେ ପ୍ରତିବାଦ କରେନାହିଁ, ଭାରତୀୟ ଅନୁଶାସନର ବଡ଼େଇ କରିବା ଦୂରର କଥା । ଶୁଣେ ୯ଟି ଏମିତି ଚଳେ, ଅନ୍ୟ କେଉଁ ଅଫିସ୍‌ର ବିଦେଶୀ ବିଶେଷଜ୍ଞ ଏମାନଙ୍କ ଶୁକ୍ରବାର ମଉଜକୁ ନଷ୍ଟ କରିବାକୁ ଯାଇ ହଇରାଣରେ ପଡ଼ିଛନ୍ତି । ଦେଶ, ସରକାରୀ କାମ ଆଜି ଛାଡ଼ି କାଲି କର ମୋର ଆପତ୍ତି ନାହିଁ । କିନ୍ତୁ ବେସରକାରୀ ଘୁରୁତର ବିଷୟମାନଙ୍କୁ ନେଇ ଚର୍ଚ୍ଚା ହେଲାବେଳେ ଏତେ ଆନନ୍ଦ କାହିଁକି ? ସିଦ୍ଧାନ୍ତ ଭାଷା ପଢ଼େଇଲାବେଳେ ହାସ୍ୟରସ ଆସିଲା କେଉଁଠୁ ? ଦୁର୍ଭାଗ୍ୟ, ବେଳେ ବେଳେ ତାଙ୍କ ପ୍ରଶ୍ନର ଉତ୍ତର ଦେଇସାରିଲା ପରେ ମୋର ସନ୍ଦେହ ହୁଏ ଯେ ତାଙ୍କର ଏଇ ଗମ୍ଭୀର ମୁଣ୍ଡହଲା ସତ ନୁହେଁ ଯେ ଏହିକ୍ଷଣି ହେଇ ବେଙ୍ଗ ଉଡ଼ିଗଲା ବୋଲି କହିଲେ ସେମାନେ ଠୋଠୋ ହୋଇ ହସିପାରନ୍ତି ।

କେହି ମୋ ଆଗରେ ଦାନ୍ତ ଗିଜଡ଼ି ନାହାନ୍ତି । କେହି ଅଭଦ୍ର ଆଚରଣ କରି ନାହାନ୍ତି । ମୁଁ ବାପୁ ନୁହେଁ କି ମାଲିକହୋଜା ନୁହେଁ ଯେ ସେମାନେ ମୋ ପ୍ରତି ସେପରି ବ୍ୟବହାର କରିବେ । କିନ୍ତୁ ଭାରତ ସମାଜବାଦୀ ନା ପୁଞ୍ଜିବାଦୀ ଏଇ ପ୍ରଶ୍ନର ଉତ୍ତରରେ ମୁଁ ଯେତେବେଳେ ଦଶମିନିଟ୍ ଯାଏ ବୁଝେଇଲି ଯେ ଭାରତ ଯେତିକି ପୁଞ୍ଜିବାଦୀ ସେତିକି ସମାଜବାଦୀ, ଏଇ ଅପୂର୍ବ ମିଶ୍ରଣ ହେଉଛି ଆମ ଅର୍ଥନୀତିର ଗୌରବ ଯେଉଁଥିପାଇଁ ସୋଭିଏତ୍ ରୁଷିଆ ଯେମିତି ଆମ ପଛରେ ଗୋଡ଼େଇଛି ଆମେରିକା ମଧ୍ୟ ସେମିତି. ଆମକୁ ବାହାବା କରୁଛି···ସ୍ୱାଜି ମୋଟର ମେକାନିକ୍ ସବୁ ପିଇଗଲା ପରି ମନେହେଲା, କିନ୍ତୁ ପରେ ପରେ ସହକର୍ମୀ ହାତରୁ ବିଅର୍ ବୋତଲ ଛଡ଼େଇ ଆନନ୍ଦରେ ଢକ୍ ଢକ୍ ହୋଇ ପିଇଯିବାର ଅର୍ଥ କଅଣ ?

ଆମ ଅଫିସ୍‌ର ମେସେଞ୍ଜର୍ ବୁଢ଼ା ପେଟ୍ରୋସ୍ ଯେତେବେଳେ ପଚାରିଲା ଯେ ଭାରତରେ ବୁଢ଼ାମାନଙ୍କୁ କାମ କରିବାକୁ ପଡ଼େ ନା ନାହିଁ ଏବଂ ମୁଁ ତାର ଉତ୍ତରରେ କହିଲି ଯେ ଆମ ଦେଶରେ ବୁଢ଼ାମାନେ କାମ ନ କରି ମଧ୍ୟ ସବୁ କାମରେ ସବୁ ସୁଖରେ ସବୁ ଦୁଃଖରେ ଦଖଲଦେଇ ପାରନ୍ତି, ଶୁଇର ନିଃଶ୍ୱାସ ପରି ନିଃଶ୍ୱାସର ଛାଇପରି···ସବୁ ଶୁଣିଲା ପରେ ସେ ମୋ ଅଫିସ୍ କାନ୍ଥରେ ଝୁଲୁଥିବା ନଗ୍ନରମଣୀ କ୍ୟାଲେଣ୍ଡର୍ ମାଗିଲା କାହିଁକି ?

ଭାରତର ପ୍ରେସିଡେଣ୍ଟ ବଡ଼ ନା ପ୍ରଧାନମନ୍ତ୍ରୀ ବଡ଼ ଏଇ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ମୁଁ ଯେତେବେଳେ ବୁଝେଇ ବସିଲି ଯେ ଆମ ସମ୍ବିଧାନରେ ଇଂଲଣ୍ଡ ଓ ଆମେରିକା ଉଭୟର ସମନ୍ୱୟ ରହିଛି, ତେଣୁ ଆମର ପ୍ରେସିଡେଣ୍ଟ ଲୋକପ୍ରତିନିଧି ହେଲେ ମଧ୍ୟ ରଜା, ଆମର ପ୍ରଧାନମନ୍ତ୍ରୀ ରାଜା ନହେଲେ ମଧ୍ୟ ରାଜାଙ୍କ ବଡ଼ବାପ···କିରଣୀ ମାବିଲିପା ତୁଚ୍ଛାକୁ "ସ୍ୱେ—ବୋ" କହି ମୋ ଟାଇର ଗଣ୍ଠି ଖୋଲିଯାଇଛି ବୋଲି ଚେତାଇ ଦେବା ନିତାନ୍ତ ଅଭୁଆଁର ପରି ନୁହେଁ କି ?

ବକ୍ତା ଅଛି ଶ୍ରୋତା ନାହିଁ, ନିବେଦନ କରି ଲାଭ ନାହିଁ, ଆପଣା କର୍ତ୍ତବ୍ୟ କରିଯାଅ, ଏହିପରି ଭାବରେ ନିଜକୁ ଅନେକ ବୁଝେଇଲି । କିନ୍ତୁ ଦୁଃଖ ଲାଗିଲା ସେ ସମୟ ନାହିଁ, ସ୍ୱାଜିଲାଣ୍ଡ ସବୁ ଦିନ ପାଇଁ ନୁହେଁ, କଣ୍ଟ୍ରାକ୍ଟ ସରିଆସୁଛି ।

ଶ୍ରୋତା ଶିରୋମଣି ସିନିଅର କେମ୍ବ୍ରିଜ୍ ସ୍ୱାଜି ଫେରିଆ ଫେରିଆ !

ଯାହାହେଉ ମୁଁ ଭିନ୍ନ କୌଶଳ ଅବଲମ୍ବନ କଲି । ଆକ୍ରମଣ । ସେମାନେ ପ୍ରଶ୍ନ ନ ପଚାରିଲେ ମଧ୍ୟ ସାମାନ୍ୟ ସୁବିଧା ପାଇଲେ ମାଡ଼ ବସ । ମଞ୍ଚରେ ଶେଷରେ ସେମାନେ ବିଅର୍ ପିଅନ୍ତୁ, ଆପଲ୍ ଚୋବାନ୍ତୁ ବା ଯାହା କରନ୍ତୁ କହିବାର କଥା କହିଦିଅ ଏବଂ ସେମାନଙ୍କର ଅମଣା ମନକୁ ବାନ୍ଧି ରଖିବାପାଇଁ ସ୍କଟଲାଣ୍ଡର ପାଣିପବନ ଫୁଲ ଫଳକୁ ନେଇ ଉଦାହରଣ ଦିଅ, ଆବଶ୍ୟକ ହେଲେ ସାମାନ୍ୟ ରସିକତା, ହ୍ୟୁମର୍ ···ସାହସ ବାନ୍ଧି ଆଗେଇ ଯାଅ, ସମୟ ନାହିଁ ।

ଥରେ ମୁଁ କାର୍ଯ୍ୟ ଉପଲକ୍ଷ୍ୟରେ ଦେଶର ଦ୍ୱିତୀୟ ପ୍ରଧାନ ସହର ମାନ୍‌-କାନକୁ ଯାଇଥିଲି । ଆମ୍ବାବାନ୍‌ଠୁ ମାନ୍‌ଜିନ କାର୍‌ରେ ପଅଁଚାଳିଶ ମିନିଟ୍‌ । ଗଲାବେଳକୁ ସୂର୍ଯ୍ୟ ଦାଉ ଦାଉ ହୋଇ ଜଳୁଥିଲେ । ଘଣ୍ଟାକ ଭିତରେ ଫେରିଲା ବେଳକୁ ସୂର୍ଯ୍ୟ ଉଭାନ୍‌, ଆକାଶରେ ମେଘ ଏବଂ ହିମାଳ ପବନ । ଅଧାବାଟରେ ବର୍ଷା ତୋଫାନ ଏବଂ କୁଆପଥର । ପରିସ୍ଥିତି ନୂଆ ନୁହେଁ । ସ୍କଟଲାଣ୍ଡରେ ଦିନ ଭିତରେ ଦୁଇ ତିନଥର ଋତୁ ପରିବର୍ତ୍ତନ ହେବା ଦେଶର ବିଭିନ୍ନ ଚମତ୍କାରିତା ମଧ୍ୟରେ ଏକତମ ବୋଲି ଗଣା ହୁଏ । ତେବେ ଅଧାବାଟରେ ହଠାତ୍ ଏମିତି ହେଲାରୁ ଗୋଟିଏ ଘଟଣା ଆସି ପହଞ୍ଚିଲା ବୋଲି ମୁଁ ବିଚାରିଲି । ସାଙ୍ଗରେ ଦୁଇଜଣ ଅଳ୍ପ ବୟସୀ ସ୍କଚ ମହିଳା—ତାଙ୍କ ଭିତରୁ ଜଣେ, ମିସ୍ ଗ୍ରେସ୍ ଚୁମାଲେ, ରଜାଙ୍କର ଏକ ବିଶିଷ୍ଟ ଗେହ୍ଲା ଝିଅର ଝିଅ ବୋଲି ମିଷ୍ଟର ମାଲ୍‌ହୋତ୍ରାଙ୍କଠାରୁ ଶୁଣିଥିଲି ଏବଂ ଡ୍ରାଇଭର ସମେତ ଦୁଇଜଣ ସ୍କଚ ଭଦ୍ରବ୍ୟକ୍ତି । ମିସ୍ ଗ୍ରେସ୍ ମୋ ପାଖକୁ ଲାଗି କରି ବସିଥିଲେ ! ସେ କେବଳ ରଜାଙ୍କ ନାତୁଣୀ ନୁହନ୍ତି, ଶିକ୍ଷା ବିଭାଗର ପ୍ରଧାନ ସଚିବଙ୍କ ଗାର୍ଲଫ୍ରେଣ୍ଡ ବୋଲି ମଧ୍ୟ ମିଷ୍ଟର ମାଲ୍‌ହୋତ୍ରା କହିଥିଲେ । ଅନ୍ୟମାନେ ଶିକ୍ଷକ, ଡ୍ରାଇଭର ଭଲ ଇଂରାଜୀ କୁହେ । ଶ୍ରୋତାମଣ୍ଡଳୀକୁ ବାଛିବାର ନୁହେଁ । ତେଣୁ ମୁଁ ଆରମ୍ଭ କଲି—

“ସ୍କଟଲାଣ୍ଡରେ ଏଇ ଘନ ଘନ ଋତୁ ପରିବର୍ତ୍ତନ ଖରା ବର୍ଷା ଗ୍ରୀଷ୍ମ ଶୀତର ଚମକ ଆମ ପାଇଁ ଏକ ନୂତନ ଅନୁଭୂତି । ଆମ ଦେଶରେ ଏମିତି ପ୍ରାୟ ହୁଏ ନାହିଁ, ଖରା ବର୍ଷା ଶୀତ ଲମ୍ବି ଲମ୍ବି ଯାଏ, ଦିନ ପରେ ଦିନ, ନିରବଚ୍ଛିନ୍ନ······”

“ବୋରିଙ୍ଗ୍ ଲାଗେ ନାହିଁ ?” ଜଣେ ଶିକ୍ଷକ ପଚାରିଲେ ।

ସମୟ, ଜୀବନର ଗତି, ଘଣ୍ଟାର ଟିକ୍ ଟିକ୍ ଟିକ୍; ଯାହା ଚାଲୁଛି ଏବଂ ଅଟକିବାକୁ ନାହିଁ, ତାକୁ ବୋରିଙ୍ଗ ବୋଲି କହିଲେ ଭାବିବାକୁ ହେବ ଯେ ମରିବା

ଭଲ, ( ମୁ ହସିଲି, ମିସ୍ ଗ୍ରେସ୍ ମୋ ପାଖକୁ ଲାଗି ଆସିଲେ ) ନା, ମୋର କହିବା ଉଦ୍ଦେଶ୍ୟ ହେଉଛି ଯେ ଯେପର୍ଯ୍ୟନ୍ତ ମଣିଷ ବଞ୍ଚିଛି ବ୍ୟତିକ୍ରମ ବିଶେଷ ନୁହେ (ମିସ୍ ଗ୍ରେସ୍ ଅଜାଣତରେ ମୋ ହାତରେ ହାତ ରଖିଲେ । ମୁଁ ଲକ୍ଷ୍ୟ କଲି ଯେ ତାଙ୍କ ହାତ ପାପୁଲି ବିଶେଷ କଳା ନୁହେଁ, ସେଇଠୁଁ ମୋର ଧାରଣା ହେଲା ଯେ ତାଙ୍କର ମୁହଁ ମଧ୍ୟ ମଧୁରିଆ କଳା । ରଜାଙ୍କ ନାତୁଣୀ ହେଲେ ଗୋରାପଣର ସଞ୍ଚାର କେଉଁ ପୁରୁଷରେ କେମିତି ଆସିଲା ଭାବିବାକୁ ଚେଷ୍ଟା କଲି ନାହିଁ ) । ବ୍ୟତିକ୍ରମ ବିଶେଷ ନୁହେଁ, ବିବର୍ତ୍ତନ ବିପ୍ଳବ ବାସ୍ତବରେ କିଛି ନୁହେଁ । ଏଇ ହେଉଛି ଭାରତୀୟ ଦର୍ଶନର ଅନ୍ୟତମ···"

ଏଇ ସମୟରେ ଗୋଟାଏ ଅତିକାୟ କୁଆପଥର ପାଖ କାଚରେ ପିଟି ହୋଇଗଲା । ସଙ୍ଘାତର ଶବ୍ଦରେ ମିସ୍ ଗ୍ରେସ୍ ସ୍ୱଭାବତଃ ଚମକି ପଡ଼ିଲେ ଏବଂ ମୋ ଦେହକୁ ଅଧିକ ଲାଗିଆସିଲେ । ତାଙ୍କୁ ଆଶ୍ୱାସନା ଦେବାପାଇଁ ମୁଁ ତାଙ୍କର ଖୋଲା ବାହୁକୁ ଆପୁଚ୍ଛେଇ ଦେଲି । ଦେଖିଲି ବାହୁର ରଙ୍ଗ ମଧ୍ୟ କୃଷ୍ଣବର୍ଣ୍ଣ ନୁହେଁ । ମୁଁ କହିବାକୁ ଲାଗିଲି—

"ବିବର୍ତ୍ତନ ବିପ୍ଳବ ଭୁହାକୁ ଭୁହା ଆସିଛି ଆସିବ । କିନ୍ତୁ ଆମେ ବଦଳି ନାହୁଁ । ନିଜକୁ କହିଛୁ ଇଏ ନୁହେଁ, ଇଏ କିଛି ନୁହେଁ, ଆମ ଚରିତ୍ରରେ ସବୁ ଖାପିଯିବ । ଆର୍ଯ୍ୟ ଆସିଲେ, ପଠାଣ ଆସିଲେ, ମୋଗଲ ଆସିଲେ, ରାଜତନ୍ତ୍ର ଗଲା, ପ୍ରଜାତନ୍ତ୍ର ଆସିଲା, ସାମ୍ୟବାଦ ଆସିବ, ବିନାଶବାଦ ଆସିବ, ଆସୁ , ଆମେ ସବୁଥିପାଇଁ ପ୍ରସ୍ତୁତ । ଆମର ଚରିତ୍ର ଯଥାଯୋଗ୍ୟ କପଡ଼ା ପିନ୍ଧିକରି ରହିଛି, ସମଶୀତୋଷ୍ଣ ଖରା ଜଳି ଉଠିଲେ ଆମ ଦେହକୁ କାଟିବ ନାହିଁ କି ବରଫ ପଡ଼ିଲେ ଆମ ଦେହ ଥରଉଠିବ ନାହିଁ ।"

ଅପର ଶିକ୍ଷୟିତ୍ରୀ ମହିଳା, ସ୍ୱାଜଯୁଲଭ ଚେହେରା, ଦୀର୍ଘକାୟ ଘନକୃଷ୍ଣ, ହାତୁକାଏ ହସ ଛୁଡ଼ିଦେଇ କହିଲେ, "କିନ୍ତୁ ଜଣେ ଜଣେ ଭାରି ସେନ୍‌ସିଟିଭ୍ , ତାଙ୍କର ଦେହ ଅଳ୍ପକରେ ଥରଉଠେ, ଯେମିତି ଆମର ମିସ୍ ଚୁମାଲେ ।"

ମିସ୍ ଗ୍ରେସ୍ ପରିହାସକୁ ମାନି ନ ମାନିଲା ପରି "ସତେ ?" ବୋଲି କହିଲେ । ସ୍ନିଗ୍ଧହାସଟିଏ କେତେବେଳଯାଏଁ ତାଙ୍କ ଓଠରେ ଲାଗି ରହିଲା । ମୁଁ ଦେଖିଲି ତାଙ୍କର ଓଠ ସ୍ଥୂଳ ନୁହେଁ, ପୂର୍ଣ୍ଣପୁଷ୍ଟ ପେଲବ···

ମିଷ୍ଟର ମାଲ୍‌ହୋତ୍ରାଙ୍କ ସାଙ୍ଗରେ ଦେଖାହେଲା ପରେ ମୁଁ ମିସ୍ ଗ୍ରେସ୍‌ଙ୍କ କଥା ପକାଇଲି, କହିଲି ଯେ ତାଙ୍କର ଚେହେରା ଗୁଲଚଲଣ ଦେଖିଲେ ମୋର

ଜଣେ ଆଦରଣୀୟା ଭଦ୍ରଜନଙ୍କ କଥା ମନେପଡ଼େ । ସେଇଠୁଁ ମାଲହୋତ୍ରା ଠୋ ଠୋ ହୋଇ ହସିଲେ, କହିଲେ—ମିସ୍ ଚମ୍ପାଲୋକ୍ଙ୍କୁ ଦେଖିଲେ ମୋର ମନେପଡ଼େ ଅଜାଡ଼ଆ ଫୁଲର ମହୁଆ ବାସ୍ନା, ଜବର ଭଅଁରମାନଙ୍କର ଅଇଁଠା ଚଲାଚଲଆ ଝଟା ବାସ୍ନା, ଏଭଳି ମାଲ ଆମ ଦେଶରେ ମିଳିବ ନାହିଁ ଗୁପ୍ତ ସାହେବ, କିନ୍ତୁ ସାଧୁ ସାବଧାନ, ଥରକରେ ମୁଣ୍ଡ ଘୂରେଇଯିବ । ସେଇଥିପାଇଁ ପରମାନେଣ୍ଟ୍ ଷ୍ଟେନୋଟେକ୍ସ ପରମାନେଣ୍ଟ୍ ହୋଇ ରହିପାରିଲେ ନାହିଁ । ବୁଝିଲେ, ମୁଁ କଅଣ କହୁଛି ?

ମୁଁ ବୁଝିଲି । ବୁଝିଲି ଯେ ମାଲହୋତ୍ରାକୁ ଯେତିକି ନୀଚ ବୋଲି ଭାବୁଥିଲି ସେ ଆହୁରି ଅଧିକ ନୀଚ । ମିସ୍ ଗ୍ରେସ୍ ଭିନ୍ନଜାତିଣୀ, ବିଦେଶିନୀ, ମୋର ଭାଉଜ ନହେଲେ ମଧ୍ୟ ଆଦରଣୀୟା ନ ହେବେ କାହିଁକି ? ମାଲହୋତ୍ରାଙ୍କର ଏଇ ଉଚ୍ଚମନ୍ୟତା, ଭେଦଭାବ, ବର୍ଣ୍ଣ ବିଦ୍ୱେଷ, ଏହାରି ବିରୁଦ୍ଧରେ ତ ମୁଁ ଲଢ଼େଇ କରି ଆସୁଛି···କରିଯିବି···କଣ୍ଟ୍ରାକ୍ଟ ସରିବାଯାଏଁ ।

ମୁଁ ପ୍ରାଣପଣେ ଚେଷ୍ଟା କରି ସିଙ୍ଗାପୁର ଭାଷାର ଆହୁରି କେତେପଦ ଶିଖିନେଲି । ଭାରତୀୟ-ୟୁରୋପୀୟ ବିଶେଷଜ୍ଞମାନଙ୍କର ସଙ୍ଗ ବର୍ଜନ କରି ଉପରେ ପଡ଼ି କାଳାଭାଇମାନଙ୍କ ସାଙ୍ଗରେ ମିଶିଲି, ସାମାନ୍ୟ ନିମନ୍ତ୍ରଣ ପାଇଲାକ୍ଷଣି ସେମାନଙ୍କର ଦଳଗତ କ୍ରିୟାକଳାପରେ ଜୁଟିଗଲି । ଆହୁରି ଦୁଇଥର ମିସ୍ ଗ୍ରେସ୍‌ଙ୍କ ସହିତ ହସ୍ତମର୍ଦ୍ଦନ (ତାଙ୍କ ସାଙ୍ଗରେ ସାଓ୍ୱାନା-ସ୍ପେନିଆ ଚଳେନାହିଁ) ସାଙ୍ଗକୁ ସାମାନ୍ୟ କଥୋପକଥନର ଆନନ୍ଦ ଅନୁଭବ କଲି ଏବଂ ସୁଯୋଗ ପାଇଲାକ୍ଷଣି ମୁଁ ମୋର ପ୍ରିୟ ଭାରତଭୂମିକୁ ପହୁଞ୍ଚାଇଲି ।

ଦ୍ୱିତୀୟ କଣ୍ଟ୍ରାକ୍ଟ ମିଳିଲା ନାହିଁ । ସେମାନେ ମୋ କାମରେ ସ୍ପିଡ଼େନ୍‌କୁ ଜଣେ ବିଶେଷଜ୍ଞ ଆଣିବେ ବୋଲି ସ୍ଥିର କଲେ । କହିଲେ ଯେ ଯଦ୍ୟପି ସେମାନେ ମୋ କାମରେ ସନ୍ତୁଷ୍ଟ, ସେମାନେ ସ୍ପିଡ଼େନ ସରକାରଙ୍କ ସାହାଯ୍ୟ ପାଣ୍ଠିର ଅବମାନନା କରିବାକୁ ଚାହାନ୍ତି ନାହିଁ, ସେମାନେ ଆଶା କରନ୍ତି ଯେ ମୁଁ ପୁଣି କେବେ···ଇତ୍ୟାଦି । ସ୍ତ୍ରୀ ଚିଠି ଲେଖିଲେ—ଭଲ ହେଲା, ଶୀଘ୍ର ଫେରିଆସ, ଆମେ ଅନେଇ ବସିଛୁ । ମୁଁ କ୍ଷୁବ୍ଧ ହେଲି ନାହିଁ । ଦୁଇବର୍ଷରୁ ଯେଉଁ ଦୁଇମାସ ବାକୀ ଅଛି ତା'ରି ଭିତରେ ମୁଁ ସ୍ଥାନୀୟ ସମାଜକୁ ଯେତେ ସାହା ଦେଇପାରିବି ଦେଇଯିବି । ତେଣୁ ମାସେ ନ ପୂରୁଣୁ—

ମୁଁ ମୋ ଘରେ କାମ କରୁଥିବା ଗୃହକର୍ତ୍ତ୍ରୀ ମେରୀର ଚତୁର୍ଥ ସ୍ୱାମୀଆଡ଼ୁ ଅଷ୍ଟମ ପିଲା ହେବାର ଉପଲକ୍ଷ୍ୟରେ ଭାରତର ପରିବାର ନିୟୋଜନ ସମ୍ପର୍କରେ କିଛି କହିଲି । କହିଲି ଯେ ଆମେ ମନେକରୁ ସନ୍ତାନ ଭଗବାନଙ୍କ ଦାନ, କିନ୍ତୁ ଦାନର ମାତ୍ରା ବଢ଼ିଗଲେ ଅସୁବିଧା—ଯେମିତି ବର୍ଷା ଅଧିକ ହେଲେ ଶସ୍ୟ ନଷ୍ଟ ହୋଇଯାଏ, ତେଣୁ ଆମେ ସ୍ୱେଚ୍ଛାରେ ସରକାରଙ୍କୁ ପ୍ରାର୍ଥନା କରୁ ଯେ ଆମକୁ ବାଧ୍ୟକରି, ଅପରେସନ୍ କରିଦିଅ···ମୁଁ ଆମ ଅଫିସ୍‌ର ବୁଢ଼ା ଚଉକିଦାର ଗାମେଜର ମୃତ୍ୟୁରେ କବରଖାନାକୁ ଯାଇଥିଲି । ସେଇଠି ଅନ୍ୟମାନଙ୍କ ଭାଷଣ ପରେ ମୁଁ ଭାରତୀୟ ମୃତ୍ୟୁ ସମ୍ପର୍କରେ ଦୁଇପଦ କହିଲି । କହିଲି, ଆମ ଦର୍ଶନରେ ଜୀବନ ମୂଲ୍ୟବାନ୍ କିନ୍ତୁ ମିଛମାୟା, ତେଣୁ ଗାମେଜେ ବଞ୍ଚିଥିଲାବେଳେ ମରି-ଯାଇଥିଲା, ମରିଗଲା ପରେ ବଞ୍ଚିବ । ଅବଶେଷରେ ଅମୃତ (ମିମ୍ ଗ୍ରେସ୍‌ଙ୍କୁ ଲୋକଗହଳରେ ଦେଖିଲି । ହଠାତ୍ ମନରେ ଆସିଲା ଯେ ଅମୃତର ସ୍ୱାଦୁ କଅଣ ଘୋଳଅଣା ମିଠା ନା ସେଥିରେ ଟିକା, ପିତା, କଷାର ଛିଟାଏ ଥିଲେ ଥାଇ-ପାରେ ?)···ଜଣେ ଇଂରାଜ ବନ୍ଧୁଙ୍କ ଘରେ ଦକ୍ଷିଣ ଆଫ୍ରିକାରୁ ଲୁଚି ପଳେଇ ଆସିଥିବା ଜଣେ କଳା ସନ୍ତ୍ରାସବାଦୀ ଯୁବକ ସାଙ୍ଗରେ ଦେଖାହେଲା । ସେ ମୋର ଆଗରେ ଦକ୍ଷିଣ ଆଫ୍ରିକାର ଭାରତୀୟମାନଙ୍କୁ ନିନ୍ଦାକରି କହିଲା ଯେ ସେମାନେ ଆପଣା ସ୍ୱାର୍ଥକୁ ଜଗି ଆନ୍ଦୋଳନରେ ମିଶୁନାହାନ୍ତି । ସେଇଠୁ ମୁଁ ଉତ୍ତେଜିତ ନ ହୋଇ ଭାରତୀୟ କର୍ମଯୋଗର ଅବତାରଣା କଲି । କହିଲି, "ଶତ୍ରୁକୁ ମିତ୍ର ବୋଲି ମଣିବ, ହିଂସା ନ କରି ବିନାଶ କରିବ, କାମ ନ କଲେ ମଧ୍ୟ ନ କରିଲା ପରି ମନେ ହେବ । ଏଇ ହେଲା ଆମ ଆଦର୍ଶର ଗୌରବ" । ଏମିତି କେତେ ଛୋଟବଡ଼ ଘଟଣାର ଉପଲକ୍ଷ୍ୟରେ ମୁଁ ନିଜକୁ ଓ ଭାରତକୁ ସଁପି ଦେଲି ।

ମୋର ଇଂଲଣ୍ଡ ଛାଡ଼ି ଚାଲିଯିବା ଖବର ଶୁଣି ଭାରତୀୟ ବନ୍ଧୁ ବିଶେଷଜ୍ଞମାନେ ଦୁଃଖ ପ୍ରକାଶ କରିଥିଲେ । ମିଷ୍ଟର ମାଲ୍‌ହୋତ୍ରା ଅପ୍ରିୟ ଅସତ୍ୟର ବାହାଦୁରୀ ଦେଖାଇ କହିଲେ—ଆନନ୍ଦର କଥା ଏଇ ଅସଭ୍ୟ ଦେଶରୁ ଚାଲି ଯାଉଛନ୍ତି । କିନ୍ତୁ—ଡ୍ୟାମ୍ ଇଟ୍—ଆଉ ବର୍ଷେଟାଏ ରହିଥିଲେ ଟଙ୍କା କିଛି ହାତକୁ ଆସି ନ ଥାଆନ୍ତା ? ମୋର ଗୋରା ବନ୍ଧୁମାନେ ସହାନୁଭୂତି ପ୍ରକଟ କରିଥିଲେ, କିନ୍ତୁ ତାହା ବନ୍ଧନୀ ମଧ୍ୟରେ ବିଚାରି ଗରିବ କହିଲା ପରି ମନେ ହେଲା । କେବଳ ମୋର କଳା ଭାଇମାନେ, ସେଇମାନେ ମୋତେ ପ୍ରକୃତରେ ଛାଡ଼ିବେ ବୋଲି ମୁଁ ଜାଣିପାରିଲି । କାନ୍ଧରେ ହାତ ପକାଇ ହାତ ଧରି ସିଂହାଦରେ ଇଂରାଜୀରେ କେତେ ଭାବରେ ସେମାନେ କହିଲେ, ମେସେଞ୍ଜରଠାରୁ ଆରମ୍ଭ କରି ମ୍ୟାନେଜର ପର୍ଯ୍ୟନ୍ତ—ମିଷ୍ଟର ଗୁପ୍ତ, ଆମେ ଆପଣଙ୍କୁ ଭୁଲି ପାରିବୁ ନାହିଁ । ମୁଁ କୃତକୃତ୍ୟ ହେଲି ।

ଶେଷ ସପ୍ତାହର ଗୋଟିଏ ଉପରବେଳା । ଶନିବାର । ମୁଁ ମୋର ଘର ସାମ୍ନା ଘାସ ଉପରେ ଲମ୍ବି ଯାଇ ଖରା ପୋଉଁଥିଲି । ବିଦେଶୀମାନେ ପ୍ରାୟ ସ୍କାଟଲଣ୍ଡର ଘାସ ଓ ପାଣିରେ ଖାଲି ପାଦ ଲଗାନ୍ତି ନାହିଁ, ଗାଇଡ୍ ବହିରେ ଅଛି ନାନାଦି ଉଦ୍ଭଟ ଜୀବାଣୁ ଦେହରେ ପ୍ରବେଶ କରି ବିଲ୍‌ହାର୍ଜିଆ ଆଦି ଆଫ୍ରିକୀୟ ରୋଗ ଆଣିଦିଏ ଯାହାର ପ୍ରତିକାର ଦୁଷ୍କର । କିନ୍ତୁ ମୋର ସେଭଳି ଭୟ ନଥିଲା । ମୋର ଦୃଢ଼ ଧାରଣା ଥିଲା ଯେ ମୋତେ ସ୍କାଟଲଣ୍ଡର ମଣିଷ ପାଣି ପବନ ଜୀବାଣୁ କୀଟାଣୁ ସମସ୍ତେ ଆଦର ନେଇଛନ୍ତି, ମୋର କିଛି ହେବ ନାହିଁ ।

ଏହି ସମୟରେ ପାଖ ଆପାର୍ଟମେଣ୍ଟ ହାଉସ୍‌ର ଦୁଇଜଣ ପରିଚିତ ସ୍କଟ ଯୁବକ, ଜଣେ ବାଣିଜ୍ୟ ବିଭାଗର ଅଣ୍ଡର ସେକ୍ରେଟେରୀ ଆରଜଣକ ତାଙ୍କର ବିଶେଷ ବନ୍ଧୁ ବସ୍ କଣ୍ଡକ୍ଟର, ମୋ ଆଡ଼କୁ ଆସିବାର ଦେଖାଗଲା । ହସି ହସି ସେମାନେ ମୋତେ ସ୍ୱାଗତ ସମ୍ଭାଷଣ ଜଣାଇଲେ । ଅଣ୍ଡର ସେକ୍ରେଟେରୀ ଉଇକ୍‌ଏଣ୍ଡ ସୁଲଭ ନାଲି ଆଖିର ଗ୍ଲାନି ମୋ ଉପରେ ଲଦି ଦେଇ କହିଲେ, "ବିଅର୍ ମିଳିବ ?"

"ବିଅର୍ ? ସରି, ମୋ ଘରେ ବିଅର୍ ନାହିଁ, ମୁଁ ମଦ ଖାଏ ନାହିଁ ।"

ଏଇ ଉପଲକ୍ଷ୍ୟରେ ମୁଁ ଭାରତୀୟ ନିଶା ନିବାରଣ ନୀତି ସମ୍ପର୍କରେ କିଛି କହି ପାରି ଥାଆନ୍ତି । କିନ୍ତୁ ମୁଁ ଅଳସ ବୋଧ କଲି । ଥାଉ, ଆଉ କେତେ କହିବି ? ତା' ଛଡ଼ା ଏଟି ସୁନ୍ଦର ଅପରାହ୍ନ…।

ଅପର ଯୁବକ ବନ୍ଧୁର ଉଦ୍‌ଗତ ହାକୁଟି-ହସ ପାଇଁ କ୍ଷମା ମାଗିଲେ । କହିଲେ, "ଆମେ ପ୍ରକୃତରେ ଆସିଛୁ ଆପଣଙ୍କୁ ନିମନ୍ତ୍ରଣ କରିବା ପାଇଁ, ମୋ ଘରେ ଆଜି ବିଅର୍ ପାର୍ଟି । ବିଅର୍ ଆଉ ମ୍ୟୁଜିକ୍ । ଅଳ୍ପଦିନ ପରେ ଆପଣ ଆମକୁ ଛାଡ଼ି ଚାଲିଯିବେ, ସେଇଥିପାଇଁ ଭାବିଲୁ…ଆପଣ ଅବଶ୍ୟ ମଦ ଖାଆନ୍ତି ନାହିଁ, କିନ୍ତୁ ମ୍ୟୁଜିକ୍ ପାଇଁ ଆପଣଙ୍କର ଆପତ୍ତି ନ ଥିବ ।"

ମୁଁ ଧନ୍ୟବାଦ ସହିତ ନିମନ୍ତ୍ରଣ ସ୍ୱୀକାର କଲି । କେମିତି ନ କରିବି ? ମୁଁ କୌଣସି ସ୍କଟ ନିମନ୍ତ୍ରଣକୁ ମନା କରିନାହିଁ । ଆଜି ଏଇ ବିଦାୟ ସଂବର୍ଦ୍ଧନାକୁ ନାହିଁ କରିବି କେମିତି ? ବିଅର୍ ନଈ ବହିଯାଉ, ଆଫ୍ରିକୀୟ ଡ୍ରମ୍-ବିଟ୍ ମ୍ୟୁଜିକ୍‌ରେ କାନ ଫାଟି ଯାଉ, ତଥାପି ସମସ୍ତ ମିଳିବ ସେମାନଙ୍କ ସହିତ ମିଶିବାକୁ, କିଛି କହିବାକୁ ।

ଫେରିଯିବା ପୂର୍ବରୁ ନିମନ୍ତ୍ରଣକାରୀ କହିଲେ, "ଆପଣଙ୍କର ଅନେକ ଚିହ୍ନା ଲୋକ ଆସିବେ, ଜଣେ ଆପଣଙ୍କ କଥା କହୁଥିଲା, ଖ୍ରୀଷ୍ଟିୟାନ୍ ମାବୁସୋ, ସିଏଅର କେମ୍ବ୍ରିଜ୍ ପାଶ କରି ମ୍ୟାନେଜ୍‌ମେଣ୍ଟ ଟ୍ରେନିଙ୍ଗ୍ ପାଇଁ ନାଇଜେରିଆ ଯାଇଥିଲା, ଏବେ ଫେରିଛି...!"

ସେଇ, ସେଇ ହେଉଛି ମୋ ଲୋକ, ଖ୍ରୀଷ୍ଟିୟାନ୍ ମାବୁସୋ ! ମୁଁ ତା'ର ରାଜ୍ୟ ଛାଡ଼ି ଚାଲିଯିବା ପୂର୍ବରୁ ସେ ଫେରି ଆସିଛି...ବିଧିବିଧାନକୁ ଧନ୍ୟ କହିବ !! ମୁଁ ଆସନ୍ତା ସନ୍ଧ୍ୟାକୁ ଚାହିଁ ରହିଲି ।

ମୁଁ ପାର୍ଟିରେ ପହଞ୍ଚି ଦେଖିଲି ଯେ ପରିସ୍ଥିତି ଅନୁମାନରୁ ବଳିପଡ଼ିଛି । ଲୋକ ଅନେକ ନୁହେଁ, ଖୁନ୍ଦାଖୁନ୍ଦି । ଯୁବକ ଯୁବତୀଙ୍କ ଦଳ ଅଧିକାଂଶ ନୁହେଁ, ସଂପୂର୍ଣ୍ଣ କହିଲେ ଚଳେ—ଅବଶ୍ୟ ସ୍ୱାଜିମାନଙ୍କ ମୁଣ୍ଡବାଳ ସବୁକେ ଧଳା ହୁଏ ନାହିଁ, ଜଣେ ଅଧେ ମୋର ବୟସର ହୋଇଥିବେ ବୋଲି ମୁଁ ଆଶା କଲି । ତନ୍ମଧ୍ୟରୁ ଯୁବତୀମାନଙ୍କର ସଂଖ୍ୟା ଆଖି ଦୁରୁଣିଆରୁ ଅଧିକ । ମିସ୍ ଗ୍ରେସ୍ ଆସି ନାହାନ୍ତି ବୋଧହୁଏ । କାହିଁକି କେଜାଣି ମୋର ମନକୁ ଆସିଲା ଯେ ନ ଆସନ୍ତୁ, ଭଲ ହୋଇଛି । ନା, ମୁଁ ଶଙ୍କି ଯାଇ ନ ଥିଲି । ମୁଁ ଜାଣିଥିଲି ଯେ ଆଜି ମୋତେ ଅବଶ୍ୟ କିଛି କହିବାକୁ ପଡ଼ିବ । ଖ୍ରୀଷ୍ଟିୟାନ୍ ମାବୁସୋ ଅଛି ଯେତେବେଳେ ମୋତେ କିଛି କହିବାକୁ ପଡ଼ିବ, ହାସ୍ୟରୋଳ ମ୍ୟୁଜିକ୍‌ର କୋଳାହଳକୁ କାଟି ଦେଇ ମୋତେ ବିଶେଷ କିଛି କହି ଦେଇ ଯିବାକୁ ହେବ, ଏଇ ବୋଧହୁଏ ମୋର ଶେଷ ଅବଦାନ । କିନ୍ତୁ ସଭାସ୍ଥଳୀରେ ଏତେ ଯୁବକ ଯୁବତୀ, ଏତେ ଅଧିକ ଯୁବତୀ ଥିବେ ବୋଲି ମୁଁ କଅଣ ଜାଣିଥିଲି ? ଜାଣିଥିଲେ ମୁଁ ପ୍ରସ୍ତୁତ ହୋଇଥାଆନ୍ତି, ନଚେ ମିସ୍ ଗ୍ରେସ୍‌ଙ୍କୁ ଡାକି ଆଣିଥାଆନ୍ତି...

ବାହାରେ ଶୀତ ସିନା, ଘର ଭିତରେ ଲୋକ ଗହଳର ଉଷୁମ କାହିଁରେ କଅଣ । ଅନେକ ଗରମ ପୋଷାକ ଉତାରି ସାରିଲେଣି । ଠେଲାପେଲାରେ ଅନାବୃତ ଦେହର ଅଂଶ ଅପର୍ ଦେହକୁ ଛୁଉଁଛି, ବେଳେବେଳେ ଚପି ହୋଇ-ଯାଉଛି, ଉପାୟ ନାହିଁ । ଏକାଧିକ ଅଚିହ୍ନା ଯୁବକ ମୋତେ ପଚାରି ଗଲେଣି—ଆପଣଙ୍କ ହାତରେ ଇଏ କଅଣ ? କୋକାକୋଲା ? ଆପଣ ବିଅର୍ ଖାଆନ୍ତି ନାହିଁ ବୋଧହୁଏ । କିନ୍ତୁ ଆମର ଅନ୍ୟ ଜିନିଷ ଅଛି ତ, ହୁଇସ୍କି, ଜିନ୍, ଓ୍ୱାଇନ୍...। ମୋତେ ବାରମ୍ବାର କହିବାକୁ ପଡ଼ୁଥାଏ—ଧନ୍ୟବାଦ—ମୁଁ ମଦ ଖାଏନାହିଁ ।

ଏକାଧିକ ଅଚହ୍ନା ଯୁବତୀ ମୋ ଦେହରେ ଘଷି ହୋଇ ନାଲି ଓଠର ହସ ଛାଡ଼ିଦେଇ ବନ୍ଧୁଭାବ ଦେଖାଇଲେଣି—ହ୍ୟାଲୋ, ହାଓ ଆର୍ ୟୁ ? ଭଲ ଲାଗୁଛି ? ମୁଁ ଈଷତ୍ ହସି ମୁଣ୍ଡ ହଲାଇଲା ବେଳକୁ ସେ କୁଆଡ଼େ ହଜି ଗଲେଣି ।

ଭାବିଲି ଏମାନେ ପ୍ରକୃତ ସ୍ୱାଜ, ମାଟିର ସନ୍ତାନ ନୁହନ୍ତି । ମୁଁ ଏଠି କିଛି କହିବି ନାହିଁ, ଚୁପ୍ ହୋଇ ବସିବି । କିନ୍ତୁ ପରକ୍ଷଣରେ ମୋର ଦୁର୍ଦ୍ଧର୍ଷ ବିବେକ ମୋତେ ଖୁଞ୍ଚା ମାରୁଥାଏ—କାହିଁକି କହିବୁ ନାହିଁ ? ଆଉ କଉଣ ଜେଉଁ ଜଙ୍ଗଲି ସ୍ୱାଜର କୁଡ଼ିଆ ଘରେ ତା'ର ଅର୍ଦ୍ଧନଗ୍ନ ସ୍ତ୍ରୀମାନଙ୍କ ଆଗରେ ତୋର କାହାଣୀ ଶୁଣାଇଥାଆନ୍ତୁ ? ଅସଲ କଥା ହେଉଛି ଏମାନଙ୍କଠେଇଁ ପ୍ରାଚୀନ ସଂସ୍କାର ଓ ନବ୍ୟ ସଭ୍ୟତାର ସମନ୍ୱୟ ହୋଇ ପାରିନାହିଁ, ଯାହା ଆମ ଭାରତରେ ସମ୍ଭବ ହୋଇଛି, ଯେଉଁଠି ସୁଟ୍ ପିନ୍ଧି ବର ବେଦୀ ଉପରକୁ ଯାଏ, ମନ୍ତ୍ର ଉଚ୍ଚାରଣ କରେ । ପିଲାମାନେ ଆଗନ୍ତୁକ ଭଦ୍ରବ୍ୟକ୍ତିଙ୍କୁ ନମସ୍ତେ ଅଙ୍କଲ୍ କହିବାକୁ ଭୁଲନ୍ତି ନାହିଁ ···ନା, ନା, କହିବ, ନିଶ୍ଚୟ କହିବ, ସୁବିଧା ପାଇଲେ ନିଶ୍ଚୟ କହିବ ।

ନିଜକୁ ସଜାଡ଼ି ନେବାକୁ ଚେଷ୍ଟା କରୁଛି, ଏଇ ସମୟରେ ଜଣେ ମାତଙ୍ଗିନୀ ଯୁବତୀ ଉଚ୍ଚସ୍ୱରରେ ମୋର ଭାବନାକୁ ହଲାଇ ମୋତେ ଆହ୍ୱାନ କଲେ—"ହ୍ୟାଲୋ, ମୋ' ସାଙ୍ଗରେ ନାଚିବାକୁ ଚାହଁ···(ହସିଦେଇ) ନା ତୁମର ଗାର୍ଲ ଫ୍ରେଣ୍ଡ୍ ରାଗିବେ ?"

"ମୋର କେହି ଗାର୍ଲ ଫ୍ରେଣ୍ଡ୍ ନାହାନ୍ତି ।"

ଏତିକି କହିଥିଲେ ଚାଲିଥାଆନ୍ତି । କିନ୍ତୁ ମୋର ବିବେକ ବୋଧହୁଏ ଉପୁଚି ପଡ଼ିଲା । ମୁଁ ଆତୁର ହ'ପଦ ଯୋଡ଼ିଦେଇ କହିଲି—

"ଆଜି ନାହାନ୍ତି କି କେବେହେଲେ ନଥିଲେ । ମୁଁ ଜଣଙ୍କୁ ବାହା ହୋଇଛି । ପୂର୍ଣ୍ଣଚ୍ଛେଦ ।"

ବାଦ୍ୟ ସଙ୍ଗୀତ ଥମି ଯାଇଥିଲା । ପଛରୁ ପୁରୁଷ କଣ୍ଠର ପ୍ରଶ୍ନ ଆସିଲା—"ଆପଣ କହିବାକୁ ଚାହାନ୍ତି ଆପଣଙ୍କର ଗାର୍ଲ ଫ୍ରେଣ୍ଡ୍ ନାହାନ୍ତି ଏବଂ ସ୍ତ୍ରୀ ମଧ୍ୟ ଗୋଟିଏ ?"

"ହଁ, ନିଶ୍ଚୟ !" ଶତ ସିଂହର ନୈତିକ ବଳ ମୋ' ଦେହରେ ସଞ୍ଚରି ଉଠୁଥାଏ ।

ଭିଡ଼ ଠେଲି ମୋ' ଆଗରେ ଯେ ଆସି ଛିଡ଼ା ହେଲା, ତାକୁ ମୁଁ ଚହ୍ନିଲି । ସେ ହେଉଛି ଖ୍ରୀଷ୍ଟିୟାନ୍ ମାରୁସୋ, ଶ୍ରୋତା ଶିରୋମଣି, ଯେ ପ୍ରାୟ ଦୁଇବର୍ଷ ତଳେ ମୋର କହିବା କଥା ଶୁଣି ଅପରୂପ ମୁଗ୍ଧ ଗୁହାଣୀର ଭେଟି ଦେଇଥିଲା । ସେ ଏତେବେଳଯାଏଁ କେଉଁଠି ଛପି ରହିଥିଲା । ଦେଖିଲି, ସେ ହିଲେ ନିଶ ରଖି ସାରଲିଣି, କିନ୍ତୁ ମୁଖମଣ୍ଡଳରେ ସେଇ ଅର୍ଜୁନ-ସୁଲଭ ଅତୁର ପଣ, ମୋତେ ଦିଅ, ଶୁଣାଅ, ଶିଷ୍ୟସ୍ତେହଂ ଶାଧି···। ସେ ମୋ' ଆଖିରେ ଆଖି ରଖି ପଚାରିଲା—

"ଆପଣ କହୁଥିଲେ ଆପଣଙ୍କ ଦେଶରେ କେତେଭଳି ପୁରୁଷ, କେତେଭଳି ସ୍ତ୍ରୀ । ତଥାପି ଆପଣ ସାରା ଜୀବନ ମାତ୍ର ଜଣେ ସ୍ତ୍ରୀ ସାଙ୍ଗରେ ବାନ୍ଧି ହୋଇ ରହିଛନ୍ତି କେମିତି ? କେମିତି ?? ଏଇ କ'ଣ ହେଉଛି ଆପଣଙ୍କ ଦେଶର ନୀତି ?"

ଅଦ୍ଭୁତ ପ୍ରଶ୍ନ ! ନିହାତି ପିଲାଳିଆ, ପ୍ରାଥମିକ, ହାସ୍ୟାସ୍ପଦ । ଖ୍ରୀଷ୍ଟିୟାନ୍ ମାରୁସୋ, ମୋର ଧାରଣା ନଥିଲା ଯେ ତୋ'ପରି ଜଣେ···ଯାହାହେଉ, ଉତ୍ତର ସହଜ । ଫରମୁଲା ମନେ ପକାଇ ମୁଁ କହିଲି—

"ହଁ, ଆମ ଦେଶର ନୀତି । ଏକରେ ଅନେକ । ମାନେ ଗୋଟିଏ ସ୍ତ୍ରୀକୁ ବାହାହୋଇ ରହିଲେ ମଧ୍ୟ ଅନେକ ସ୍ତ୍ରୀଙ୍କ ସହିତ (ଏଁ, ମୁଁ କ'ଣ କହିବାକୁ ଯାଉଛି ? ମୁଁ ମଦ ପିଇ ନାହିଁ, ମୋତେ ନିଶା ଧରିଛି ନା କଅଣ ?) ମାନେ ଜଣେ ସ୍ତ୍ରୀକୁ ବାହାହୋଇ ରହିଲେ ମଧ୍ୟ ଆମେ ତା'ଠରେ ତା' ରୂପରେ ଗୁଣରେ ଅନେକ ସ୍ତ୍ରୀଙ୍କ ସହିତ (ଧ୍ୟାତ୍, ତଥାପି ଗଣ୍ଡଗୋଳ ହୋଇଗଲା, ମୁଁ ମୂଳରୁ କହୁଛି, ବିଅର୍ ପାର୍ଟିର ଏଇ ପରିବେଶ ମୋତେ ସୁହାଇବ ନାହିଁ । ଖ୍ରୀଷ୍ଟିୟାନ୍ ମାରୁସୋ ମୋତେ ଗୁହିଁ ରହିଛି, ଅନ୍ୟମାନେ ତାଳି ମାରିବାକୁ ଅପେକ୍ଷା କରିଛନ୍ତି, ଉତ୍ତର ସାରିବାକୁ ହେବ)—"

ସେଇଠୁଁ ମୁଁ ମନେମନେ ସେଇ ମୂର୍ଖ ନିର୍ବୋଧ ଶ୍ରୋତାମଣ୍ଡଳୀକୁ ଧିକ୍ ବୋଲି କହିଲି । କୁହୁଳି ଉଠୁଥିବା ନିଆଁକୁ ଗ୍ରାହ୍ୟ ନ କରି କହିଲି—

"ଅନେକ ସ୍ତ୍ରୀଙ୍କୁ ମାର ଗୋଲି । ମୁଁ ଜଣେ ମୋର ଆଉ ଜଣେ, ଏତିକି ନ ବୁଝିବାର କଅଣ ଅଛି ?"

ସେମାନଙ୍କଆଡ଼ୁ ଯେଉଁ ବିରାଟ ହାସ୍ୟରୋଳ ଉଠିଲା ସେଥିରୁ ସ୍ପଷ୍ଟ ଜଣା ପଡ଼ିଲା ଯେ ସେମାନେ ବୁଝିବାକୁ ଅକ୍ଷମ—ମୋତେ ଅଥବା ମୋର ଭାରତକୁ ।

ଗ୍ଲୁଡ଼, ଇଏ ମୋର ପରାଭବ ନୁହେଁ, ସେମାନଙ୍କର । ଦୁଃଖ ଲାଗିଲା । ଭାବିଲି ମିସ୍ ଗ୍ରେସ୍ ପାର୍ଟିକୁ ଆସିଥିଲେ ଏଭଳି ଘଟଣା ଘଟି ନ ଥାଆନ୍ତା ।

କିଛିଦିନ ପରେ ଘରମୁହାଁ ପ୍ଲେନରେ ବସିଲି ପରେ ସେଦିନ ସଞ୍ଜର ପରାଭବ ବାସ୍ତବରେ ମୋର ନୁହେଁ, ସେମାନଙ୍କର ବୋଲି ମୁଁ ନିଜକୁ କହିଲି । ଦୁଃଖ ଲାଗିଲା । ଭାବିଲି ମୋର ସ୍ତ୍ରୀ ସୁମି, ମୋର ନିଜର ସୁମି ପାଖରେ ଥିଲେ ଏଭଳି ଘଟଣା ଘଟି ନ ଥାଆନ୍ତା ।



# ଶୀତ୍କାର

ଶିହରଣ ନୁହେଁ, ଶୀତ୍କାର ।

ଲକ୍ଷଣ ସମାନ ବୋଲି ମନେହେଉଛି । କୂଳଭଙ୍ଗା ଢେଉମାନଙ୍କରୁ ଗୋଟିଏ ବାଲଲେ କ୍ଷେପଟି ଯାଇ ଆହୁରି ଦୂରକୁ ଚାଲିଯାଉଛି, ଚାଲିଯାଇ ଥରି ଥରି ଫେରିଆସୁଛି । ସତେକି ପୃଥିବୀକୁ ପାଖରେ ଦେଖିଲାକୁ କ'ଣ ମନେ ପଡ଼ୁଛି । ଉଡ଼ନ୍ତା ପବନର ଝଲକାଏ କେଉଁ ଘରର କେଉଁ ଅନ୍ଧାରରେ ପଶିଯାଇ ଥରି ଉଠୁଛି, ବାଉଳା ହୋଇ ଫେରି ଆସୁଛି । ମନେ ପଡ଼ୁଛି । ଦେହ ? ଦେହର ସିନ୍ଧୁକ ? ବହଳ ଉଷ୍ମ ନିଃଶ୍ୱାସ ? କରଣର ଧାରେ କେଉଁ ଓଲଟଲ ପାଣିକୁ ଚକଚକ କରି କ୍ଷଣକ ପାଇଁ ଅଟକିଯାଉଛି, ଓଦା ହେଲା ପରି ଲାଗୁଛି । ଥରି ଉଠୁଛି, ପଳେଇ ଆସୁଛି । ଦେହଲଗା ପାଣି, ଲୁହ କି ଲାଳ କି କଅଣ···ମନେ ପଡ଼ୁଛି । ଅଖଣ୍ଡ ଓଁକାର ଚଳମାନ ଜଗତର ଅସଂଖ୍ୟ ଧ୍ୱନି, କୁହାଟ, କାନ୍ଦଣା, ଢୋଢୋ ପେଁ ପାଁକୁ ଆହୁରି ଆବୁରିବାକୁ ଯାଇ କେଉଁ ଗୋଟିଏ ମୁହୂର୍ତ୍ତି କୁଉଁରେ ଚମକି ଉଠୁଛି । ଝାଡ଼ିହୁଡ଼ି ହୋଇ ଫେରି ଆସୁଛି । ହେଲେ ମନେ ପଡ଼ୁଛି । କେଉଁ ଦେହର ଭୋକ, ଭୋକର ଯନ୍ତ୍ରଣାର ଗୀତ ଅଧାରୁ କଟି ଯାଇଛି । ଶୂନ୍ୟ ମଳର ଗ୍ରନ୍ଦର ସହସା କେଉଁ କ୍ରୋଧୀ ନାଲି ରଙ୍ଗରେ ବାଜିଲା ପରି ମୁହୂର୍ତ୍ତିକ ପାଇଁ କୁଞ୍ଚେଇ ହୋଇ ପୁଣି ଖୋଲି ଯାଉଛି । ମନେ ପଡ଼ୁଛି···କେଉଁ ବିଗତ ଦେହର ମନର ନିଆଁ ଏବେ ମଧ୍ୟ ଜଳୁଛି, ଶାନ୍ତ ହୋଇନାହିଁ !

ନିର୍ଗୁଣ ବ୍ରହ୍ମର କିଛି ହେଲା ନାହିଁ । ଅନନ୍ତ ଶୟନରେ ଆଖି ଲାଗିଲା ନାହିଁ । ପିଲାଏ କ୍ଷିତି ଅପ୍ ତେଜ ମରୁତ୍ ବ୍ୟୋମ ଖେଳୁଛନ୍ତି, ଖେଳନ୍ତୁ···ଉଁଃ, ସ୍ମୃତିରେ ଲାଗିଲା କାହିଁକି ? କାଟିଲା ? ଡରିଗଲୁ ? ନାଁରେ, କିଛି ହେବ ନାହିଁ । ଆଉ ସେଆଡ଼େ ଯିବୁ ନାହିଁ—ବୁଝିଲୁ ? ତୋର ଭାବ ନାହିଁ, ଅଭାବ ନାହିଁ, ଆଶା ନାହିଁ, ଭାଷା ନାହିଁ, ସ୍ପର୍ଶ ନାହିଁ, ଗନ୍ଧ ନାହିଁ, କିଛି ନାହିଁ । ନାସ୍ତିରେ କିଛି ନାହିଁ, ସ୍ମୃତି ନାହିଁ ।

ନା, ମୁଁ ସେଆଡ଼େ ଯିବ ନାହିଁ । କିନ୍ତୁ ମୁଁ ଗଲି କାହିଁକି ? କିଏ ମୋତେ ଯିବାକୁ କହିଲା ? ତୁମେ ଚାହିଁ ନଥିଲେ ମୁଁ କଣ ଯାଇଥାଆନ୍ତି ? କେଉଁ ଅତୀତର ଅନ୍ଧାର ଗୁଡ଼ୁଗୁଡ଼ି କାହିଁକି ମୋତେ ଡରେଇ ଥାଆନ୍ତା ? ହେଉ, ମୁଁ ସେଆଡ଼େ ଯିବିନାହିଁ ।

କିନ୍ତୁ ଯେଉଁ କଥାକୁ ସେଇ କଥା । ଥାଇ ଥାଇ ଅବୋଲକରା କମ୍ପନ, ଶିହରଣ । ଶୀତ୍କାର ନୁହେଁ, ଶିହରଣ । ହଁ ଭଲ ଲାଗିଲା ପରି ମନେ ହେଉଛି ! ସତେକି ଆଗକୁ ଗଲେ ପୁଣି ଏକ ରହସ୍ୟରେ ଝୁଣ୍ଟିଲେ ଅଧିକ ଭଲ ଲାଗିବ ପରି । ସେଇଠୁ ଆହୁରି ଆଗକୁ ଯିବାକୁ ପଡ଼ିବ, ସେଇଠୁ ପୁଣି ଏକ ରହସ୍ୟ··· ସ୍ଥୂଳ ଜମିଯିବ, ସ୍ଥୂଳରେ ଦେହ ଲାଗିବ, ରକ୍ତ, ମାଂସ, ଧମନୀ, ହାତ, ଗୋଡ, ଆଖି, ନାକ, ଓଠ, ମଣିଷ !

ନା, ନା, ମଣିଷ ମୋର କେହି ନୁହେଁ, ମଣିଷ ମୋର ଭୂତ !!

ଆସୁଛି ଆସିଲି କହି ସେମାନେ ପଳେଇ ଆସିଲେ । ବ୍ରହ୍ମର କିଛି ହେଲା ନାହିଁ । ବ୍ରହ୍ମ ବଦନରେ ଲଗି ରହିଥିବା ହସରେଖା କଣ୍ଟିନ୍ୟୁ ଆଗକୁ ପଛକୁ ହେଲା ନାହିଁ । ଯେମିତି ସବୁବେଳେ ଦେଖାଯାଏ ସେମିତି । ଛବି ।

କ୍ଷିତି ଅପ ତେଜ ଆଦି ପିଲମାନେ ତା,କୁଇ ଦେଖି ଯାହା ପାଇବାର ପାଇଲେ । ଆଶ୍ୱାସନା, ଚେତାବନୀ, ସେଇ ପୁରୁଣା ଦୋହରା କଥା – ସେଆଡ଼େ ଯିବୁନାହିଁଟି, ଏଇଠି ଶାନ୍ତ । ଯେତେ ଖେଳୁଛ ଖେଳ, ସୀମା ଟପିଲେ ସର୍ବନାଶ ।

ବ୍ରହ୍ମ ବଦନରେ ଲେଖା ହୋଇଥିବା ଅକ୍ଷରଗୁଡ଼ିକ ପଢ଼ୁ ପଢ଼ୁ ଭିନ୍ନ ଅର୍ଥ ପାଇଲା ପରି ମନେହେଲା । ମନେହେଲା ସେ କହୁଛନ୍ତି – ଖେଳରେ ସୀମା ଆସିବ କେଉଁଠୁ ? ତା,ହେଲେ ସିଏ ଖେଳ ହେଲା କେମିତି ? ସୀମା ନ ଟପିଲେ ସ୍ଥଳ ମଝିରେ ନୀଳସୁନ୍ଦର ହ୍ରଦ ଆସି ପାରିବ ନାହିଁ । ଜଳ ମଝିରେ ଶ୍ୟାମସୁନ୍ଦର ଦ୍ୱୀପ ରହିପାରିବ ନାହିଁ, ସମତଳରେ ହିମାଳୟ ଛିଡ଼ା ହୋଇ ପାରିବ ନାହିଁ, କମଳରେ ଭ୍ରମର ବନ୍ଦୀ ହେବନାହିଁ । କହୁଛନ୍ତି ମୁକ୍ତିର ଅପର ପାଖ ବନ୍ଧନ । ଜହ୍ନର ଅପର ପାଖ ଦେଖିବାକୁ ଇଚ୍ଛା ହେବନାହିଁ କେମିତି ? କହୁଛନ୍ତି ଅତି ଆଶ୍ଚର୍ଯ୍ୟ ସେଇ ବନ୍ଦୀ ଘର । ଯିବୁ ?

ଯିବୁ ନାହିଁଟି ! ! !

ଓଃ, ଦୟାକରି ମୋତେ ଆଉ ଖେଳିବାକୁ ଡାକନାହିଁ । ଖେଳିବାକୁ ହେଲେ ମୁଁ ନିଜକୁ ସମ୍ଭାଳି ପାରିବ ନାହିଁ । ଅରଉଠି ଫେରି ଆସିବ, ପୁଣି ଯିବ । ଯିବାକୁ ପଡ଼ିବ । ଯିବାକୁ ପଡ଼ିବ ଯେତେଦିନ ଯାଏଁ ସ୍ଥୂଳର ଛୁଇଁ, ଛୁଇଁର ସତ୍ତା ଏମିତି ଲୋଭଉଥିବ, ଛଟପଟେଇଉଥିବ ।

ହେଲେ ଖେଳିବାକୁ କେହି ମନା କଲେନାହିଁ । ପ୍ରକୃତ ଖେଳିବାକୁ ଲାଗିଲା । କୁଦିଲା, ନାଚିଲା, ଖେଳୁ ଖେଳୁ ଏଆଡ଼େ ସେଆଡ଼େ ପଳେଇଲା, ସ୍ମୃତିରେ ଝୁଣ୍ଟିଲା ।

ଝୁଣ୍ଟିଲାରୁ ଇଏ ନୁହେଁ ଇଏ ନୁହେଁ ବୋଲି କହିଲା । ମିଛ ଭୂତ ! ଇଏ ନୁହେଁ, ସ୍ଥିର ସ୍ଥାବର ଦ୍ରୁମର ଧ୍ୟାନ, ଅକାରଣ ପତ୍ରର ଫୁରୁ ଫୁରୁ । ଗତିରେ ଗମନ ନାହିଁ, ରତିରେ ରମଣ ନାହିଁ । ଇଏ ଆମର ସାଙ୍ଗର ବୋଲି ମନେ ହେଉଛି ।—ଇଏ କଏ ? ସାନ ସାନୁବାଲୁ । ପାଣିକୁ ମାଟିକୁ ଆଙ୍କୁଡ଼ି ଧରିଛି । ଏଇକ୍ଷଣି ଅଛି ଏଇକ୍ଷଣି ନାହିଁ । ମିଶି ମିଶି ଯାଉଛି ପୁଣି ଗୋଟି ଗୋଟି ହୋଇ ଯାଉଛି । ଇଏ ମଧ୍ୟ ଆମର ସାଙ୍ଗବୋଲି ମନେ ହେଉଛି । ନା, ଇଏ ନୁହେ ।...ଏଇଠି ଦେଖ । ଦେହ ଉଡ଼ୁଛି, ଦେହ ବୁଡ଼ୁଛି ଆପଣା ଆନନ୍ଦରେ ପଇଁତରା ମାରୁଛି । ଗୋଟିକର ଆନନ୍ଦ ଚକ୍‌କରକୁ ଆରକ ଗିଳିବ ବୋଲି ଅନେଇ ରହିଛି । ଗିଳି ଦେଉଛି । ଆଃ, କି ମଜା । ବଡ଼ିଆ ଲୁଚକାଳି ଖେଳ ! ଏଇ ମାଛମାନେ, ବେଙ୍ଗମାନେ, ସାପମାନେ, କପୋତମାନେ, କାଉମାନେ, ଚଢ଼େଇମାନେ ...ହେଲେ ଏଇଠି କଣ ରହିଯିବାକୁ ପଡ଼ିବ ? ଏଇ ଅଧାପନ୍ତରିଆ ଜୀବା । ? ଯାହାର କଳ ମୋଡ଼ାହୋଇ ରହିଛି ଗତିପାଇଁ, ରତିପାଇଁ, ଲୋକପାଇଁ, ଭୀତିପାଇଁ ? ଉହୁଁ, ଏମାନେ ଆମ ସାଙ୍ଗର ନ ହେଲେ କଣ ହେବ, ଆମର ଖେଳ କଣ୍ଢେଇ । ପ୍ରବୃତ୍ତିରୁ ପ୍ରକୃତି ଦୂର ନୁହେଁ । ନା, ଆସିଲୁ ଯଦି ଆହୁରି ଆଗକୁ ନ ଗଲେ ଚଳିବ ନାହିଁ (ଯିବୁ ନାହିଁଟି) ! ଯିବାକୁ ପଡ଼ିବ (ଭୂତ ଆସିଲେ ଡରିବୁ ନାହିଟି ?) ଭୂତର ମୁକାବିଲା କରିବାକୁ ପଡ଼ିବ । ସ୍ମୃତି କଲବଲ କରୁଛି । ରଖେଇ ଥୋଇ ଦେଉନାହିଁ । କହୁଛି ଏମିତିକା ଦେହ ଦେହ ନୁହେଁ, ନିଃଶ୍ୱାସ ପ୍ରାଣ ନୁହେଁ । କାହିଁକନା ଏଥିରେ ମନ ନାହିଁ । କାମନା, ଅପୂରଣର କାନ୍ଦଣା ନାହିଁ ।...ପଶୁ କାନ୍ଦେ ପରା ? ଏଇ ଦେଖେ, ଗାଈ କାନ୍ଦୁଛି । ଜୀବାତ୍ମାର ଲୁହ । ସୁନ୍ଦର । କିନ୍ତୁ —କିନ୍ତୁ ତଥାପି ସ୍ମୃତି ବାନ୍ଧି ଉଠୁନାହିଁ । ମନେହେଉଛି ଇଏ ମଧ୍ୟ ସାନ ସାମାନ୍ୟ, ପ୍ରବୃତ୍ତିର ପୂରକ । ଏଥିରେ ଅସୀମ ଅଜଣାର ଜନ୍ମଜନ୍ମାନ୍ତରର ଶୋକ ନାହିଁ । ମନ ଥିଲେ କଣ ହେବ ମହତ ନାହିଁ । ସତସତିକା ଆତ୍ମା ନାହିଁ । ଆସିବ କେଉଁଠୁ ? ଏମାନେ ହସିପାରନ୍ତି ନାହିଁ ଯେ । ସେଇ ଓଠଚିରା ପ୍ରତିଷ୍ଠା, ଆନନ୍ଦକୁ ଉଡ଼େଇ ଦେବାକୁ ଦୁଃଖକୁ କାଟି ଦେବାର ରସିକତା, ବଧାତା ଉଦ୍ଦେଶ୍ୟରେ ସେଇ ଚମତକାର ତିରସ୍କାର, ତାକୁ ଏମାନେ ପାରିବେ ନାହିଁ । ପାରିବ ମଣିଷ-ପଶୁ । ସେଇଟି ଦେଇପାରିବ ହସକାନ୍ଦର ବିଚିତ୍ର ଭେଟି, ବ୍ୟକ୍ତର ବ୍ୟଞ୍ଜନା, ଅବ୍ୟକ୍ତର ବେଦନା; ସୃଷ୍ଟିର ନାଭି ଯନ୍ତ୍ରଣା....ସେଇ ଆମର ଭୂତ ! ମଣିଷ ! !

ସ୍ମୃତି ପାକଳ ହୋଇ ଆସିଲାଣି, ଯିବାକୁ ପଡ଼ିବ ରକ୍ଷାନାହିଁ, ରକ୍ଷାନାହିଁ ।

ଗଲା, ଗଲାଣି, ଆସିଲାଣି···

ବ୍ରହ୍ମ ଦଶିବାକୁ ନାହିଁ । ନୀରବ ନମସ୍କାର ପିତାଙ୍କଠାରୁ ଆଉ କଛି ପାଇବାର ନାହିଁ । ଭଲ, ଏଣିକି ଆମେ ନଜକୁ ନଜେ । ଆମର ସ୍ମୃତି, ଆମର ଜୃତି, ଆମର ଶାନ୍ତି । ପରୁଆ ନାହିଁ । କେହି ଆମକୁ ଦେଖିପାରିବେ ନାହିଁ, କାହାକୁ ଆମେ ଦୋଷ ଦେବୁନାହିଁ, ମଲେ ମରିବୁ ପଛେ ।

ମରିବୁ କଣମ ? ଆମେ ଜନ୍ମ ହେବାକୁ ଯାଉଚୁ ପରା ? ବାବୁ, ଏଇ ହେଉଛି ପଦ୍ମର ରସ, ବପରୀତର ବଳାପ । ଆମେ ଯାହାକୁ ଅସ୍ଥାୟୀ ମରଣ ବୋଲି କହୁ, ସେମାନେ ତାକୁ ଅସ୍ଥାୟୀ ଜୀବନ ବୋଲି କହନ୍ତି । କହନ୍ତି, ହେଲେ ବିଶ୍ୱାସ କରନ୍ତି ନାହିଁ ।ମାୟା ମିଛ ବୋଲି ଘୋଷଣା କରନ୍ତି । ଶେଷକୁ କୋଉ କୂଳକୁ ନ ହୋଇ ଭେଁ ଭେଁ ରଡ଼ି ଛାଡ଼ନ୍ତି । ମଣିଷ ଛଡା ଏମିତିକା ତାମସା କଏ କରିପାରିବ ? ସେଇ ତାଙ୍କର କଳା, କବିତା, ଦର୍ଶନ !

ସେଥିପାଇଁ ତ ଏଇ ଉଚ୍ଛନ୍ନ ପଣ । ସୃଷ୍ଟିସାର ସିଧା ଓଲଟା ମଣିଷକୁ ଧରିବା ପାଇଁ ତ ଏଇ ତରତର, ତାଡ଼ନା । କାଳେ ବ୍ରହ୍ମଙ୍କର ଦୟା ପଳେଇବ, ବିଗ୍ରହ ବଦଳିଯିବ ।

ମୁଁ ଜାଣେ ସେ ମୋତେ ମିଛରେ ମନା କରୁଥିଲେ । ମୁଁ ଜାଣେ ତାଙ୍କର ମୋ ପ୍ରତି ଅସୀମ ଦୟା । ମୋ ସ୍ମୃତିରେ କର୍ମଫଳର ସୁନା ଚକଚକ କରୁଛି, ସେଇଲାଗି ମୁଁ ବର ପାଇଛି !

ଜନ୍ମ ହେବ । ମଣିଷକୁ ଧରିବ ମଣିଷକୁ ପାଇବ ।

ମଣିଷ ହେବ । ଯାହାର ଲୀଳାଖେଳା ମରୁଭୂମିରେ, ଅରଣ୍ୟରେ, ସମତଳ ଶ୍ୟାମଳରେ, ଆକାଶରେ, ପାଣିରେ, ପାତାଳରେ, ଗହଳରେ, ବେଗରେ, ଶବ୍ଦରେ ଯନ୍ତ୍ରରେ, ତଥା ବନ୍ଧନରେ, ନୀରବରେ, ଧ୍ୟାନରେ, ମନ୍ତ୍ରରେ, ସେକ୍ସରେ । ଆହା, ମଣିଷ ହେବ ।

ଖାଇବରେ, କାଳଫଣ୍ଟିଆ ଅଂରେଜ୍, ନାଗପୁର କମଳା, ଲକ୍ଟିନ୍ ଲଙ୍ଗସ୍ତେନୋ, ଚିଲିକା ଚିଙ୍ଗୁଡ଼ି, କାଉଆର, ଶୁଖୁଆ ମଞ୍ଜି, କେକ୍, ପୋଡ଼ପିଠା, କୋକାକୋଲା, ପଇଡ଼ପାଣି, ସାମ୍ପେନ୍, ମହୁଆ, ହ୍ୱାଇସ୍କି, ଗଞ୍ଜେଇ···

ଦେଖିବରେ, ବିଗତ ପୁରୁଣା ପ୍ରକୃତିକୁ ଦେଖିବ, ଆଗତ ନୂତନ ଦେହକୁ ଦେଖିବ, ଗୋରା କଳା ଶ୍ୟାମଳ, ସଭ୍ୟ-ବ୍ରା, ସ୍ଲାନ ଅସଭ୍ୟ-ନଗ୍ନସ୍ତନ, ମିନିମ୍ୟାକ୍‌ସି ବିଚିତ୍ରପୁଷ୍ପ ଶାଢ଼ୀ ବେଢ଼ା କଟିନିତମ୍ବ, କଜଳକଳା ଶ୍ୟାଡ଼ୋଶାଗୁଆ ଆଖି, ମୁକ୍ତ ଦୃପ୍ତ ସୁପ୍ତ ସର୍ପିଳ କେଶ···

(କହିଲ ପଛ ପ୍ରକୃତିକୁ ମଧ୍ୟ ଦେଖିବ । ଗ୍ରାଣ୍ଡ କାନିଅନ୍, କାଞ୍ଚନଜଙ୍ଘା, ଆକାଶ, ଢଳଢଳ ଶିଶିର, ଛଳଛଳ ଝରଣା ଇତ୍ୟାଦି । ତଳିଆ ପ୍ରାଣୀମାନଙ୍କୁ ମଧ୍ୟ ଦେଖିବ, ସ୍ଥାବର ସୁନ୍ଦର ଡାଳିଆ, ଗୋଲାପ, ପାଇନ, ଦେବଦାରୁ, ଜଙ୍ଗମ ସୁନ୍ଦର ଧଳା ଘୋଡ଼ା, ଧଳା ପାରା, ମାଙ୍କଡ଼ନାଚ, ମୟୂରନାଚ ବାହାଲିଆ ସାପ, ଟିଉବ୍‌ଲାଇଟ୍ ଧାନ ମାଣକ ଖାଉଛି ବସି, ଇତ୍ୟାଦି ଇତ୍ୟାଦି ସେମାନଙ୍କୁ ଦେଖିବ ନାହିଁ ବୋଲି କିଏ କହିଲା ? ହେଲେ ଆଉ ଗ୍ରହବାଣୀରେ ଦେଖିବ, ଆରାମ ବିରାମରେ ଦେଖିବ । ଆଗେ ମଣିଷ ତା'ପରେ ଯେଉଁକଥା ।)

ଶୁଙ୍ଘିବରେ, ଦେହର ବାସ୍ନା ଦେହଲଗା ବାସ୍ନା ଝାଳମିଶା ହଳଦୀ ଚନ୍ଦନ, ଅତରଚୁଆଁ ଅଗୁରୁଧୂପ, ଧୂପମିଶା ସିଗାରେଟ ଧୂଆଁ, ଧୂଆଁ ଛୁଆଁ ତାମ୍ବୁଲ, ନିଃଶ୍ୱାସ, ନିଃଶ୍ୱାସ ଆଉ···

(ହଁ ହଁ, ଅନ୍ତରଙ୍ଗ ବାସ୍ନା ଶେଷରେ ରାତି ଶେଷରେ ଶେଫାଳି ଚୁମ୍ବା ସମୀରଣର ବାସ୍ନା । ଶୁଙ୍ଘିବ, ଅବଶ୍ୟ ଶୁଙ୍ଘିବ । ବାକି ଯେତେକ ପ୍ରକୃତିର ବାସ୍ନା, ବର୍ଷାଭିଜା ମାଟି, ପାଚିଲା ଧାନ, ଅମ୍ବ ବଉଳ ଇତ୍ୟାଦି । କିନ୍ତୁ ମଣିଷ ବାସ୍ନାର କଡ଼େ କଡ଼େ, ଆଗେ ମଣିଷ ।)

ଶୁଣିବ କେତେ କଥା, କେତେ ଗୀତ, ଶୋଇବାପାଇଁ, ଜାଗିବାପାଇଁ, ନିପାଶଳି ଭାଷାର ଧ୍ୱନି ଆହା-ଉହୁ, ଆଉ ଧ୍ୱନିର ଗୋପନ ଭାଷା, ନୂପୁର କଙ୍କଣ, ଚୁଡ଼ି ଝଣ ଝଣ···

(ରାତି ଶେଷରେ ଶିବମନ୍ଦିର ଠଂ ଠଂ ଶୁଣିବ, ଅବଶ୍ୟ ଶୁଣିବ । ଆଉ ଯେତେକ ପ୍ରକୃତିର ଧ୍ୱନି, ମେଘ ଗୁରୁଗୁରୁ ବର୍ଷା ଟୁପୁ ଟୁପୁ, କାକଳିକୂଜନ, ମଧୁପଗୁଞ୍ଜନ ଇତ୍ୟାଦି । କିନ୍ତୁ ପୃଷ୍ଠଭୂମିରେ, ପରଧିରେ, ଯେମିତିକି ମଣିଷ ଧ୍ୱନିରେ ଆଞ୍ଚ ଲାଗିବ ନାହିଁ ।)

ଛୁଇଁବା କଥା କହୁନାହିଁ । ଦେଖିଲାବେଳେ ଶୁଙ୍ଘିଲାବେଳେ ଶୁଣିଲାବେଳେ ଛୁଆଁ ଛୁଇଁ ହୋଇ ସାରିଛି । ହେଲେ ପୂରା ହୋଇନାହିଁ । ହେବ କେମିତି ?

ସେଇତ ଖେଳର ଶେଷକଥା । ତାକୁ ସହଜରେ ପୂରଣ କରିହେବ ନାହିଁ । ଅନ୍ତରଙ୍ଗତମ ସ୍ପର୍ଶ, ସେକ୍ସ୍, ବ୍ରହ୍ମାସ୍ତ୍ର । ତାକୁ ଅତୀବ ଭକ୍ତିଶ୍ରଦ୍ଧା ସହକାରେ ପ୍ରୟୋଗ କରିବାକୁ ହେବ, ଯଥାବିଧି, ଯଥା ସମୟରେ···କିଓ ସେଇଠୁଁ ପରା ବ୍ରହ୍ମଜ୍ଞାନର ଆରମ୍ଭ ? ସଙ୍ଗମ ସମ୍ପନ୍ନ ହେଲାପରେ, ସବୁସବୁକା ସଂପୂର୍ଣ୍ଣ ହେଲା-ପରେ ସେଇ ଯେଉଁ ଶିହରଣ, ଶୀତ୍କାର ନୁହେଁ ଶିହରଣ, ତା'ପରେ ଫେରିବା କଥା । ମୁଁ କଣ ଜାଣେନାହିଁ ?

ବ୍ରହ୍ମମୁହିଁ ହସିଯାଉଛୁ । କୁଟିଳ କଣ କହିବାକୁ ଚାହୁଁଛ ।

କହୁଛ ସାମାନ୍ୟ ମେତତ୍ ପଶୁଭିଃ ନରାଣାମ୍ । ସେବାଟ ଖସଡ଼ା । ସେବାଟେ ଫେରିହେବନାହିଁ ।

କହୁଛ ମଣିଷ ହେବାକୁ ହମ ହମ ହେଉଛୁ, ମଣିଷର ପାପତାପ, ରୋଗ ବଇରାଗ, ମଇଳା ଅସନା କିଛି ଦେଖି ନାହୁଁ । କିଛି ମନେ ପଡ଼ୁନାହିଁ ? ବୁଦ୍ଧ, ଯିଶୁଖ୍ରୀଷ୍ଟ, ରାମକୃଷ୍ଣଙ୍କ ଯାତନା ଯନ୍ତ୍ରଣା, କିଛି ମନେ ପଡ଼ୁନାହିଁ ?

ଆଃ ମୋର ସ୍ମୃତି ଏମିତି ସେମିତି ନୁହେଁ, କାଲିକାର ନୁହେଁ । ସବୁ ମନେ ପଡ଼ୁଛି, ଯୁଗଯୁଗର ବଞ୍ଚିବାର ଯନ୍ତ୍ରଣା । ଇଏ ନୁହେଁ, ଇଏ ନୁହେଁ ଇଏ ମିଛ-ମାୟା ବୋଲି ରଡ଼ି ଛାଡ଼ିବ ବୋଲି କହୁଛୁ । ବଞ୍ଚିବା ବଞ୍ଚିବା ନୁହେଁ, ତଥାପି ବଞ୍ଚିବ, ତଥାପି ମରିବ, ଡରିବ ଆଉ ତରିବ, ଏଇ ହେଉଛି ମଣିଷ ଧର୍ମ । ଏତିକି ଜଣାନାହିଁ ବୋଲି ଭାବୁଛ ?

ଅଙ୍ଗପ୍ରତ୍ୟଙ୍ଗ ଘାଆ ହୋଇ ଛିଣ୍ଡି ଯିବାର ଦେଖିବ, ବୁଢ଼ାବାପକୁ ଘୂଅରେ ଘାଣ୍ଟି ହେବାର ଦେଖିବ, ଯୁଦ୍ଧ ଭୂଇଁରେ ପିଚକି ପଡ଼ୁଥିବା ରକ୍ତରେ ଉଛୁଳିବ । ରାସ୍ତାକଡ଼ ଆବର୍ଜନା କୁଣ୍ଡରୁ ରୁଟି ଚରୁଡ଼ାଏ ଉଦ୍ଧାର କରି ଝେଟିବୋଇବ, କୁକୁରକୁ ଘୁସିମାରି ରଗେଇ ଦେବ, ଲୁହକୁ ଲେଞ୍ଜରାରେ ଅଟେକେଇ ଦେବ, ସଅଁ ସଅଁ ହେବ, ଗଅଁ ଗଅଁ ହେବ···ସବୁ କଲବଲ ଅସନାକୁ ଆଉଁରି ନେବ । ତଥାପି ମୋ ଦେହକୁ ଛାଡ଼ିବ ନାହିଁ । ଦେଖିବ, ଶୁଙ୍ଘିବ, ଶୁଣିବ, ଛୁଇଁବ । ଫାଇଭ୍‌ଷ୍ଟାର୍ ହିଲ୍-ଟନ୍ ହୋଟେଲ୍‌ରେ ରେଶମ ଦେହକୁ ନେଇ ଉଷୁମ ଟାଣିବ । ଖପରାକଡ଼ର ଗୁଡର ଫାଟରେ ତାରକୁ ଖଟେଇ ହେବ ଆଉ ଖାସୁ ଖାସୁ ଦେହକୁ ପାଖକୁ ଟାଣିବ । ଆହୁରି ପାଖକୁ ଟାଣିବ ଉଷୁମ ଆସିବାଯାଏଁ । ଦେହକୁ ଛାଡ଼ିବ ନାହିଁ ।

ବୁଦ୍ଧ ଖ୍ରୀଷ୍ଟ ରାମକୃଷ୍ଣ ଓଗେରଙ୍କୁ ମୁଁ ଜାଣେ । କିନ୍ତୁ ମୁଁ ସେଥିରୁ ଗୋଟିଏ ହେବ କାହିଁକି ? ମୁଁ ଗୋଟିଏ, କେବଳ ଗୋଟିଏ ହେବ କାହିଁକି ? ସବସକଳ

ହେବ । ସବୁ ମଣିଷର ଦେହରେ ଦେହ ହୋଇ ପ୍ରବୃତ୍ତିକୁ ସାଉଦେବ, ଲାଗିହୋଇ ନିଃଶେଷ କରିବ । ନିଃଶେଷ କରି ଭେଁ ଭେଁ କାନ୍ଦିବ । ଇଏ ନୁହେଁ ଇଏ ନୁହେଁ ବୋଲି ତୁମ ଆଡ଼କୁ ମୁହେଁଇବ । ସବୁ ମଣିଷର କଳା କବାଟରେ ଲଟପଟ ହୋଇ ଗଡ଼ି ଗଡ଼ି ଫେରିଯିବ···ମିଁ ମିଁ କା ମାଣିକ ରଜା, ସମସ୍ତର ବାସ୍ତବକୁ, ବିଷକୁ, ସ୍ମୃତି ଇତିହାସକୁ ସାଙ୍ଗରେ ନେଇ ଫେରି ଆସିବ । ଯେମିତିକି ସ୍ମୃତି ଆଉ ଡାକିବ ନାହିଁ ।

ଆଉ ଥରେ ଜନ୍ମ ହେବାକୁ ପଡ଼ିବ ନାହିଁ । ଓଁ ଶାନ୍ତି, ଶାନ୍ତି, ଶାନ୍ତି !

ଆରେ, ଇଏ କଅଣ ? ଏମିତି ଠୋ ଠୋ ହୋଇ ହସୁଛ କାହିଁକି ? ତିନିପୁର ଦୁଲୁକେଇ ହସୁଛ, ବାପ ପଣିଆର ଆଡ଼ମ୍ବର ଦେଖେଇ ହସୁଛ । ସତେକି ମୋତେ ମଣିଷ ହେବାକୁ ଦେବନାହିଁ, ମିଛୁଟାରେ ଏତେବାଟ ଆସିବାକୁ କହିଲ । କାହିଁକି ? କାହିଁକି ??

ମୁଁ ସବୁ ମଣିଷ ହୋଇ ଫେରିଆସିବି । ଶେଷଥର ପାଇଁ । କାହିଁକି ମୋତେ ମନା କରୁଛ ?

ମନା କରୁନାହାନ୍ତି । କେବଳ ହସୁଛନ୍ତି । ମଣିଷର ମୁକ୍ତି ଭିକ୍ଷାକୁ ତାଚ୍ଛଲ୍ୟରେ ଉଡ଼େଇ ଦେଇ, ତା'ର ହାସ୍ୟରସକୁ ଆନ୍ତୁର ଖଣ୍ଡେବାଟ ଘୋଷାଡ଼ି ନେଇ ହସୁଛନ୍ତି । ମୁକ୍ତିନାହିଁ !

ମୁକ୍ତି ନାହିଁ କାହିଁକିନା ମୁଁ ସବୁମଣିଷ ହୋଇ ପାରିବି ନାହିଁ । କେବଳ ଜଣେ ମଣିଷ ହେବି । ଗୋଟିଏ "ମୁଁ"ର ଚେତନାରେ ଅନ୍ଧକୂପରେ ବନ୍ଦୀ ହୋଇ ରହିବି । ଆଜୀବନ ବନ୍ଦୀ ହୋଇ ରହିବି । ନିଷ୍ଠୁର ସେଇସ୍ଥା ଗୃହାନ୍ତ ।

ହଉ, କୋଉଠିକି ପଠେଇବାକୁ ଚାହୁଁଛ ପଠେଇଦିଅ । ଜେଲ୍‌ଦଣ୍ଡ ଆରମ୍ଭ ହୋଇଯାଉ । ଆରମ୍ଭ ହେଲେ ସରିବ, ସେଥିକୁ ତୁମେ ମନା କରିପାରିବ ନାହିଁ ।

ତଥାପି ମୁଁ ମଣିଷର ଦେହକୁ ସତକୁ ଆଙ୍କୁଡ଼ି ଧରିବି । ଦେହର ପ୍ରବୃତ୍ତିକୁ ପ୍ରୀତିକୁ ତୁଚ୍ଛ ବୋଲି କହିବି ନାହିଁ । କୋଉଁଠିକି ପଠଉଛ ପଠାଅ । କୋଉ ନର୍ସିଙ୍ଗ୍-ହୋମ୍ କୁଡ଼ିଆ ପଡ଼ିଆ ଜଙ୍ଗଲରେ ଜନ୍ମ ହେବାକୁ କହୁଛ କୁହ, ମୁଁ ପରୁଆ କରେ ନାହିଁ । କୋଉ ଗୋସ୍ୱି କାଳୀ ଶ୍ୟାମଳୀର ଗର୍ଭରେ ମୋର ଗୋଟିକିଆ ଜୀବାତ୍ମା କୁଆଁ ମାରିବ ମାରୁ ।

ମୋ ମାଆ ମୋ ପାଇଁ ଅପେକ୍ଷା କରିଛୁ ।

\+ \+ \+

ଭାରତବର୍ଷର ଏକତମ ପ୍ରାନ୍ତର ରାଜଧାନୀରେ ଚୈତ୍ର ସନ୍ଧ୍ୟା ଆସନ୍ନ ଜମେଇ ପାରୁଥିଲା । ରାଜକର୍ମଚାରୀମାନଙ୍କର କଲୋନି ଲେଖା ନଗରୀରେ ଜନୈକ ତରୁଣ ଦମ୍ପତି ବୁଲି ବାହାରିଥିଲେ । କଲୋନି ଟପିଲେ ଖୋଲା ଲମ୍ବା ରାସ୍ତା, ଭରପୂର ଅମ୍ଳଜାନ···ସ୍ୱାମୀ ତରତର ହେଉଥିଲେ, କାଳେ ଅନ୍ୟ କେଉଁ ଦମ୍ପତିଙ୍କ ହାବୁଡ଼ରେ ପଡ଼ିଲେ ମୋନା ଗପ ଯୋଡ଼ି ଦେବ, ଭ୍ରମଣର ମିଆଦ କମିଯିବ । କିନ୍ତୁ ସେଭଳି ଆଶଙ୍କାର କାରଣ ନଥିଲା, ଯେହେତୁ କିଛିଦିନ ହେଲା ସ୍ୱାମୀ ବାସୁଦେବ କଲୋନିର ପଛବାଟେ, ମାନେ ତଳିଆ କର୍ମଚାରୀମାନଙ୍କର କ୍ୱାର୍ଟର୍ସ୍ କାଟି ଦେଇ ସେମାନଙ୍କ ପାଇଖାନା ଧାଡ଼ିର କଡ଼େ କଡ଼େ ଯେଉଁ ରାସ୍ତା ଯାଇଛି ସେଇବାଟେ, ଚୁପ୍ କରି ଖସିଯିବା ପାଇଁ ମୋନାଦେବୀଙ୍କୁ ବାଧ୍ୟ କରି ଆସୁଛନ୍ତି । ପତ୍ନୀଙ୍କୁ ବୁଝାଇ ଆସୁଛନ୍ତି ଯେ ସାମାନ୍ୟ ଦୁର୍ଗନ୍ଧରେ ଯାଏ ଆସେ ନାହିଁ (ଅଧିକାଂଶ ଦୁର୍ଗନ୍ଧ କାଳ୍ପନିକ. ମୋନାର ଅଭିଜାତ ଆଘ୍ରାଣର କାରସାଦ), ସର୍ଟ୍‌କଟ୍ ହେଉଛି ବଡ଼ କଥା । ତେଣୁ କାଁ ଭାଁ ନମସ୍କାର ପାଇଁ ହାତ ଯୋଡ଼ିବା ଛଡ଼ା ବନ୍ଧୁଭାବରେ ଅଟକି ଯିବାର ପ୍ରଶ୍ନ ଉଠୁନାହିଁ । ତଥାପି ସମ୍ଭାବନା ରହିଛି ବୋଲି ବାସୁଦେବ ତରତର ହେଉଥିଲେ । କେତେବେଳେ କେଉଁ କଥା, ଗତି ବେଗ କୋହଳ କରିବା ଅନୁଚିତ ।

ମୋନାଦେବୀ ପଛକୁ ରହିଗଲେ । "କଣ ହେଲା ?"

"ଗନ୍ଧ—"

ଧନ୍ୟ ମୋନାବୋଲି କହିବା ପୂର୍ବରୁ ବାସୁଦେବଙ୍କର ମନେହେଲା ପ୍ରକୃତରେ ଗନ୍ଧ ଆସୁଛି । ପଛବାଟର ଜଣାଶୁଣା ନଳାପାଣିର ଗନ୍ଧ ନୁହେଁ । ତା'ଠାରୁ ଅଧିକ ଉତ୍କଟ । ପଚାମାଂସର ଗନ୍ଧ । ସେଇଠୁ ତାଙ୍କର ଆଖିରେ ପଡ଼ିଲା । ପଡ଼ିଆର ଅଗଏ ସିମେଣ୍ଟକଂକ୍ରିଟ୍ ଚନ୍ଦା ଭୂଇଁ ଉପରେ – ତଳେ ପି. ଡବ୍ଲ୍ୟୁ. ଡି.ର କେଉଁ ସମ୍ପତ୍ତି ଥିବ ପରି—ଦୁଇଟା କାଉ କଣ ଗୋଟାଏ ଖୁମ୍ପି ବୁଲିଛନ୍ତି ଏବଂ ଏ ପାଖରୁ ସେପାଖ ନାଚ କରୁଛନ୍ତି । କଣ ହୋଇଥିବବୋଲି ଅନୁମାନ କରିବାରେ କଷ୍ଟ ହେଲା ନାହିଁ । ଆଜି ସକାଳେ ଅଫିସକୁ ଯିବାବେଳେ ସାଙ୍ଗ ଅଫିସରମାନେ କଥାବାର୍ତ୍ତା ହେଉଥିଲେ । ଯେ ସକାଳୁ ସକାଳୁ କଲୋନି ହତାରେ ଗୋଟିଏ ନବଜାତ ଶିଶୁ ମରି ପଡ଼ିଥିବାର ଦେଖାଯାଇଛି । ଜଣେ କହିଲା

ସେ କାଳେ ଦେଖିଛୁ, ସେତେବେଳକୁ ଜନ୍ତୁଗୁଡ଼ାକ ତାର ଓଠକୁ ନେଫେଡ଼େଇ ଚିର ସାରଲେଣି । କହିଲ ସେ ସେ ଶବ ଉଠାଇବା ପାଇଁ ମ୍ୟୁନସିପାଲଟିକୁ ଫୋନ କରସାରଛୁ । ଫୋନ କରଥିଲ ତ କଣ ହେଲା ? ମେହେନ୍ତର ନେଲା ଯଦି କାହାପାଇଁ ଏତକ ଗୁଞ୍ଜି ଦେଇ ଗଲା ? ସନ୍ତକ ?

"ସେଇଟା କଣ ମ ?"

"ମଲା ବଲେଇ କି କୁକୁର⋯ଚ୍ଛଲ ଚ୍ଛଲ, ଆଗକୁ ଚ୍ଛଲ ।" ମସ୍ତବଡ଼ ଭୁଲ୍ ହୋଇଗଲା । ମ୍ୟୁନସିପାଲ୍‌ଟିବାଲାଙ୍କର ଦକ୍ଷତା କେତେଦୂର ଜାଣିବା ସତ୍ତ୍ୱେ ଏବାଟେ ଆସିବା ଉଚତ ହୋଇ ନ ଥିଲା । ମୋନାକୁ ସାଙ୍ଗରେ ନେଇ ଆସିବା ଉଚତ ହୋଇ ନ ଥିଲା ।

"ପିଲା ହାତ ଭଳିଆ ଦେଖାଯାଉଛୁ । ମଣିଷ ଛୁଆ ନୁହେଁ ତ ?"

"ଧାତ୍, କଣ କହୁଛ, ତୁମ ମୁଣ୍ଡ ଖରାପ ?"

"ସତରେ ସେମିତ ଦେଖା ଯାଉଥିଲା । କାଳେ ହୋଇ ନଥିବ । କେଉଁ ମାଆ ତା' ପିଲାକୁ ଜନ୍ମ କର ଏମିତ ପକେଇ ଦେଇ ଚ୍ଛଲଯିବ ? ପୁଣି ଆଜି-କାଲକା ଯୁଗରେ ? ତା'ଛଡ଼ା ଆମ କଲୋନରେ କିଏ ଏକଥା କରବ ମ ? ଇଏ କଣ ଗାଆଁ ବସ୍ତି ହୋଇଛୁ ? ଏଇ ତଳ କ୍ୱାଟର୍ସ ବାଲା କିରାଣୀ ସିନା, ସ୍ୱାଙ୍କର କଣ ଦୟାମାୟା ନାହିଁ ?"

ସ୍ୱାମୀ ବାସୁଦେବ ତରତର ହୋଇ ମୁଣ୍ଡ ଝୁଙ୍ଗାରଲେ ।

"ମୁଁ କଣ କରବ, ମୋତେ ସତରେ ସେମିତ ଦେଖା ଯାଉଥିଲା । ଠିକ ଠିକ ଆଙ୍ଗୁଳି⋯ହେ ଭଗବାନ୍ ମଣିଷ ଛୁଆ ନୁହେଁ ତ ?"

ପ୍ରତର୍ଦ୍ଧିସ୍ୱା ବାଲିମୂରେ ଆସିଲେ ମଧ୍ୟ ଆସିଲା । ମୋନାଦେବୀଙ୍କର ଦେହ ଅଳ୍ପ ବହୁତ ଶୀତେଇ ଉଠିଲା ।



# ହସକଥା

ମୁଁ ହସିବାକୁ ମନା କରୁନାହିଁ, କିନ୍ତୁ ତୁମେ ପିଲାମାନେ, ତୁମ ଜୀବନର ହାନିଲାଭ ମାନମହତ୍ତ୍ୱ କ'ଣ ବୁଝିଁଛ ? ସେଇଥିପାଇଁ କହୁଛି ତୁମ ହସରେ ଭାବ ନାହିଁ, କିଛି ବୋଲି କିଛି ନାହିଁ ! କହୁଛି ବନ୍ଦ କର, ପ୍ଲିଜ୍ !!

ପ୍ରଥମେ ପ୍ରଥମେ ନିରଞ୍ଜନବାବୁ ପିଲାମାନଙ୍କୁ ହସିବାର ଦେଖିଲେ ଏମିତି କହୁଥିଲେ । ମାନେ ବାଧିଲା ପରେ ମନେ ମନେ କହୁଥିଲେ । କ୍ରମଶଃ ବ୍ୟଥା ନିଜ କୁଣ୍ଡଳୀରେ ଗୁଡ଼େଇ ହୋଇ ରହି ପାରିଲା ନାହିଁ । ଫିଟିଯାଇ ଗ୍ରେଟ ମାରିବାକୁ ବସିଲା । ନିରଞ୍ଜନ ବାବୁ ସଣ୍ଦରେ ନ କହିଲେ ମଧ୍ୟ ପାଟି ପାକୁ ପାକୁ କଲେ—

ହ୍ୟାପ ତୁମେ ମଣିଷଛୁଆ ନା ମାଙ୍କଡ଼ଛୁଆ ? ଅଯଥାରେ ହସୁଛ କାହିଁକି ? ପିଠି ଗଲୁ କରୁଛ ?

ହରେକ କିସମର ପିଲା । ଗ୍ରେଟ ବଡ଼, କଳା ଗୋରା, ଗରିବ ବଡ଼ଲୋକ, ମାଖିନା ମୁହଁ ଗଜରା ନିଶ, ଫୁଙ୍ଗୁଲା ପିଲେହି ପେଟ, ଟେରିଲିନ୍ ଗୋଲ୍‌ଗଣେଶ । ରାସ୍ତା ଘାଟରେ ବୁଲିଲାବେଳେ କିମ୍ବା କର୍ମକ୍ଷେତ୍ରରେ ଝରକାରେ ମୁହଁ ଗଳେଇ ଭାବିଲାବେଳେ ସେମାନେ ତୁଛାକୁ ହସିବାର ଦେଖାଯାଆନ୍ତି । ଅନ୍ତତଃ ନିରଞ୍ଜନ ବାବୁଙ୍କର ସେମିତି ମନେ ହୁଏ ଏବଂ ସେ ଓଠ କାମୁଡ଼ନ୍ତି, ପଦେ ଶୁଣେଇଲା ପରି ପାଟି ପାକୁ ପାକୁ କରନ୍ତି ।

ଘରୁ ଅଫିସ ଯାଏଁ ଏମିତି କେତେ ବାଟ ହେଲେ ସେଇ ଖଣ୍ଡକରେ ସେମାନଙ୍କର ଅଦଉତି କାହିଁରେ କଅଣ ? ଘରୁ ବାହାରିଲା କ୍ଷଣି ଜଣେ ଦୁଇଜଣ ଟୋକା ଟ୍ୟାକ୍‌ସି ପାଇଁ ଟାଉଟର କରନ୍ତି । ନିରଞ୍ଜ ବାବୁ ପ୍ରାୟ ମନା କରନ୍ତି ସେ ସେ ଟ୍ୟାକ୍‌ସି ଚ଼ହାନ୍ତି ନାହିଁ, ବସ୍‌ରେ ଯିବେ । ତଥାପି ସବୁଦିନେ ସେଇ ହସ ହସ ପ୍ରଶ୍ନ ଯାଚନା—ସାର୍ ଟ୍ୟାକସି ଭଲ ? ମନାକଲେ ମଧ୍ୟ ହସ ମଉଳେ ନାହିଁ । ମନେହୁଏ ସେମାନେ ଆନନ୍ଦରେ ଆଶା-ନିରାଶାର ବଲ ଖେଳନ୍ତି । ଜଣଙ୍କର ହସ କୁହେ—ଫୁଃ, ହେଲା ନାହିଁ । ଆଉ ଜଣକର କୁହେ—ବାସ୍, ନ ହେଲା ନାହିଁ । ସେଇଠୁ ସେମାନେ ଚଳନ୍ତା ଗାଡ଼ି ଘୋଡ଼ା ଗହଳରେ ବିଚିତ୍ର ଧ୍ୱନି କରି ହଜିଯାଆନ୍ତି । ସେମାନଙ୍କୁ ବଜାର ଟୋକା ବୋଲି କହି ଉଡ଼େଇଦେଲେ ଚଳିବ

ନାହିଁ । ସେମାନେ ମଧ୍ୟ ଆସନ୍ତା କାଲି । ଆସନ୍ତା ଭାରତୀୟ ଅର୍ଥନୀତିର ଉତ୍ତର ଦାୟୀ । ତାଙ୍କ କଥା ଛାଡ଼ ଦଅ, ବସ୍ ଟ୍ରାମ୍‌ରେ ଯେଉଁ ରଙ୍ଗଛଡ଼ା ଜନ୍-ପିନ୍ଧା ମଧ୍ୟବିତ୍ତ ଘର ପିଲାମାନେ ଯା' ଆସ କରନ୍ତି, ସେମାନେ କାହିଁକି ହସନ୍ତି ? ନିରଞ୍ଜନ ବାବୁଙ୍କର ସନ୍ଦେହ ହୁଏ ଯେ ସେମାନେ ଅଟକି ଯାଇଥିବା ଚକଫଟା ଗାଡ଼ି, ବସ୍‌ରୁ ଓହ୍ଲାଉଥିବା କଙ୍କାଳଖୋଳ ମଣିଷ, ଲଙ୍ଗୁଡ଼ ଟେକି ହଗି ହଗି ଯାଉଥିବା ଗାଈ ଆଉ ପସରା ବଞ୍ଚେଇ ଧାଇଁ ପଳାଉଥିବା ଚଣାଚୁର ବାଲା, ଏଇସବୁ ଇତର ଦୃଶ୍ୟ ଦେଖି···ଛିଃ ! ତୁମମାନଙ୍କ ସ୍କୁଲରେ କ'ଣ ଆଦର୍ଶ ଜୀବନମାଳା ପଢ଼ା ହୁଏନାହିଁ ? ଭାରତର ଇତିହାସ, ବର୍ତ୍ତମାନର ବହୁମୁଖୀ ସଂକଟ କିଛି କ'ଣ ତୁମର ଚକ୍‌କଣ ଚେତନା ଭିତରେ ପଶେ ନାହିଁ ? ନିରଞ୍ଜନ ବାବୁ ସେମାନଙ୍କ ଆଡ଼କୁ କଟମଟ କରି ଚାହିଁବାକୁ ଚେଷ୍ଟା କରନ୍ତି, କିନ୍ତୁ ସେମାନଙ୍କର ଚଞ୍ଚଳ ଚାହାଣୀ ଧରାଛୁଆଁ ଦିଏ ନାହିଁ । ବସ୍‌ରୁ ଓହ୍ଲାଇ ଅଫିସ ଯାଏଁ ଆହୁରି କେତେ କିସମର ଅର୍ବାଚୀନ ଅନାବଶ୍ୟକ ହସ ବଜାରି ଗୁଣ୍ଡାଉଡ଼ା ହସ, ସମ୍ଭ୍ରାନ୍ତ ସିନେମା ହସ, ଟୋକା ଫେସନ ହସ, ଶେଷକୁ ଲିଫଟ୍‌ମ୍ୟାନ୍ ପୁଅର ସଲାମ୍ ସାହେବ ହସ··· ନିରଞ୍ଜନବାବୁ ବ୍ୟତିବ୍ୟସ୍ତ ହୋଇ ଉଠନ୍ତି ।

ନିରଞ୍ଜନ ବାବୁ କଲିକତାର ଅନ୍ୟତମ ନାଗରିକ । ଗୋଟିଏ ପୁରୁଣା ବିଦେଶୀ କମ୍ପାନୀ, ଯେଉଁ ମାନଙ୍କର ଭିକ୍‌ଟୋରିଆ ସ୍ନୋ ବର୍ତ୍ତମାନ ସୁଦ୍ଧା ଉଚ୍ଚ ସାମାଜିକ ମହଲରେ ଆଦୃତ କିନ୍ତୁ ଯେଉଁମାନେ ଯୁଗରୁଚି ଅନୁଯାୟୀ ତାଙ୍କର ସ୍ୱାଧୀନତା ପର ଶୃଙ୍ଗାର ସାମଗ୍ରୀକୁ ଏଲିଜାବେଥ୍ ଆଖ୍ୟା ଦେଇଛନ୍ତି । ନିରଞ୍ଜନ ବାବୁ ତାଙ୍କର ହେଡ୍ ଅଫିସରେ ଉପର ମହିଆଁ ଅଫିସର । ଗୋରା ସାହେବମାନେ ବଡ଼ମାଲିକ ହୋଇ ବିଲାତରେ ଅଛନ୍ତି, କିନ୍ତୁ ପରମ୍ପରା ରହିଛି । ଚୌରଙ୍ଗୀରେ କମ୍ପାନୀର ନାଲି କୋଠା ଆଜିକାଲିକାର ଚକଚକିଆ ଚଉଡ଼ା ଡେଙ୍ଗା ଡେଙ୍ଗା କୋଠାମାନଙ୍କୁ ପଛୁଆ ନ କରି ନିଦା ସବୁଜ ହୋଇ ବସି ରହିଛି । ଅନେକେ କମ୍ପାନୀର ନାଆଁ ଜାଣନ୍ତିନାହିଁ । ଅନେକ କୋଠାର ନାଆଁ ମାକ୍‌ଫର୍ସନ ହାଉସ ବୋଲି ଦେଖି ପାରନ୍ତି ନାହିଁ, ପଢ଼ି ପାରନ୍ତି ନାହିଁ । କାରଣ ଇଟାରେ ଖୋଳା ହୋଇଥିବା ନାଆଁ ଇଟାର ଐତିହ୍ୟରେ ମିଶିଗଲାଣି । ଜାଣିବା ଲୋକେ କହନ୍ତି କମ୍ପାନୀ ନିଜକୁ ଲୁଚେଇ କରି ରଖିଛି, କାଲେ ନାଲି ପତାକାବାଲା ମାଡ଼ି ଆସିବେ । ଏଇ ଭଲ; ଭିକ୍‌ଟୋରିଆ ବସିଛି, ଏଲିଜାବେଥ୍ ମୁଣ୍ଡ ଟେକିଲାଣି, ଲାଭ ଆସୁଛି ବିଦେଶୀ କର୍ତ୍ତାମାନେ ଖୁସି ଅଛନ୍ତି, ଦେଶୀ ନିରଞ୍ଜନ ଆରାମରେ ଅଛି···

ଦେଶୀ ନିରଞ୍ଜନର ଏଇ ଗୋଟିଏ ବ୍ୟକ୍ତିଗତ ବେମାରି ଦେଖା ଦେଲାଣି । ହେଲେ ସେଥିରେ କମ୍ପାନୀର ଯାଏ କେତେ ଆସେ କେତେ ?

କମ୍ପାନୀର କିଛି କ୍ଷତି ହେଉ ନାହିଁ । ନିରଞ୍ଜନ ବାବୁ ପ୍ରତିଦିନ ଚମତ୍କାର ଅକ୍ଷର ଏବଂ ଶୁଦ୍ଧ ଇଂରେଜୀରେ ବ୍ୟସ୍ତବିବ୍ୟସ୍ତର ସମୀକ୍ଷା କରୁଛନ୍ତି ଏବଂ ସଂଲଗ୍ନ ଟଏଲେଟ୍‌ର ଦର୍ପଣରେ ନିଜର ଚେହେରା ଦେଖି କହୁଛନ୍ତି—ଠିକ ଅଛି ।

ଅର୍ଥାତ୍ ସେ ନିଜକୁ ଦର୍ଶାଉଛନ୍ତି ଯେ ତାଙ୍କର ଏଇ ନୂତନ ମନୋଭାବ, ଅତିଶକ୍ତ ହସଯାନଙ୍କୁ ମାରି ଦେବାର ଇଚ୍ଛା, ଏଥିରେ ବିଚଳିତ ହେବାର ନୁହେଁ । ଏଥିଯୋଗୁ କମ୍ପାନୀର ଫାଇଲ୍, ବେଶଭୂଷା, ହ୍ୟାଲୋ ହାଓ ଆର୍ ୟୁ, ଅପରାହ୍ଣ ଗୃ' ଇତ୍ୟାଦି କେଉଁଥିରେ ଧୂଳିମଳି ଲାଗିଯାଇଛି ବୋଲି କେହି କହିପାରିବ ନାହିଁ । ଘରେ ମଧ୍ୟ ନୁହେଁ । ଚନ୍ଦ୍ରା ଅବଶ୍ୟ ମଝିରେ ମଝିରେ (ଆଜିକାଲି) ସେଇ ଧରାବନ୍ଧା ଜୋକ୍ କରେ—ଆଜି ତୁମର କ'ଣ ହୋଇଛି ? ମେମ୍‌ସାହେବ ପୁଣି ତୁମକୁ ଡ୍ୟାମ୍ ବୋଲି କହିଲେ ? ଚନ୍ଦ୍ରା ଭଲ ଭାବରେ ଜାଣେ ଯେ ଗୋରା ହାକିମମାନେ କେବେଠୁଁ ବିଦାୟ ନେଲେଣି, ବର୍ତ୍ତମାନର ବଡ଼ସାହେବ ଦେଶୀ ମାରୁଆଡ଼ି, ତାଙ୍କ ସ୍ତ୍ରୀ ସ୍ୱାମୀଙ୍କ କମରାରେ ପ୍ରବେଶ କରି ତାଙ୍କୁ ମାଡ଼ି ବସିବାର କୌଣସି ଆଶଙ୍କା ନାହିଁ । ତା'ଛଡ଼ା ଆଜିର ନିରଞ୍ଜନ କିରାଣୀ ନୁହେଁ ଯେ ହାକିମର କମରା ଭିତରକୁ ପଶିଗଲେ ତାକୁ କିଏ ଡ୍ୟାମ୍ ବୋଲି କହିବ ଆଉ ତା'ର ପ୍ରକୋପରେ ବାବୁର ଚେହେରା ଭାଙ୍ଗିଯିବ···ତଥାପି ସେ ମୋର ଅଫିସ୍ ଫେରନ୍ତା ଚେହେରା ଉପରେ ଆକ୍ଷେପ କରି ଏଭଳି କଉତୁକ କରେ, କରୁ । ସେଥିରୁ କ'ଣ ପ୍ରମାଣିତ ହେଉଛି ଯେ ମୋର ସ୍ୱଭାବ-ସୁଲଭ ଚିନ୍ତାକୁଳ ଭାବରେ ଭିନ୍ନ ରଙ୍ଗ ଦିଶି ଯାଉଛି ? ଧରାପଡ଼ି ଯାଉଛି ଯେ ମୁଁ ଚନ୍ଦ୍ରା ଆଗରେ ଫେରାଦ୍ ହେବାକୁ ଆସିଛି – ମାଆଲୋ, ସେମାନେ କା-ହିଁ-କି ହସୁଛନ୍ତି !

ଅସମ୍ଭବ । ନିରଞ୍ଜନ ବସୁର ଭିତରି ରାଗ ଭିତରି ଘୃଣା ତଥା ଭିତରି କୁତୁକୁତୁକୁ କେହି ଧରିପାରିବେ ନାହିଁ । ବିଲାତି କମ୍ପାନୀରେ ଚାକିରି କରିବା ଦ୍ୱାରା ଏଇ ଅନ୍ୟତମ ତାଲିମ ଶିଖି ନେଇଛି ଯେ ମୋ' ଭିତର ପୋଡ଼ି ଜଳିଯାଉ, ମୋର ଇମେଜ୍ ସେମିତି ଥିବ ।

ନିରଞ୍ଜନ ବାବୁଙ୍କ ଇମେଜ୍‌ର ଶାରୀରିକ ଉପାଦାନ ଏହି ପ୍ରକାର । ସେ ହାରାହାରି କଲିକତି ଭଦ୍ରଲୋକଙ୍କ ତୁଳନାରେ ଡେଙ୍ଗା । ଦେହର ରଙ୍ଗ ଗୋରା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଚଉଡ଼ା କପାଳ ଚନ୍ଦା ମୁଣ୍ଡକୁ ଆବୃତ ନେଇଛି । ଫଳରେ ବୁଦ୍ଧି ଏବଂ ଟାଳର ଚକଚକ ଅନେକ ଉଚ୍ଚକୁ ଗଲାଣି, କାହାରି ଆଖିରେ ନ ପଡ଼ିବ ନାହିଁ । ଗ୍ରେଟ ଆଖି ଦୁଇଟି କଦାପି ଢ଼ୁଳେଇଲା ପରି ଥକିଗଲା

ପରି ମନେହୁଏ ନାହିଁ । ଅଥଚ କ୍ୱଚିତ୍ କିଛି କହିଲାପରି ଦିଶେ । ସଚେତକ ଆଖିର କାମ କେବଳ ଦେଖିବା ଭଳି କରି ଦେଖିବା । ପୃଷ୍ଠଚ୍ଛେଦ । ନିରଞ୍ଜନ ବାବୁଙ୍କର ବିଶ୍ୱାସ ଯେ ଭିତର ସ୍ଫୁରଣ ଗ୍ରହଣୀର ନୁହେଁ କି ଚେହେରାର ଅନ୍ୟ କେଉଁ ଅଂଶର ନୁହେଁ, ଇଚ୍ଛା ନ କଲେ ନୁହେଁ । ତେବେ ମାନିବାକୁ ପଡ଼ିବ ଯେ ତାଙ୍କର ସବୁ ଓଠ ଦୁଇଟି ଉଚିତରୁ ଅଧିକ ଆଗକୁ ମାଡ଼ିଯାଏ । ଓଠମାନେ ସୁନ୍ଦର (ଚନ୍ଦ୍ରା କହୁଥିଲା ଯେ ନାରୀର ମୁହଁରେ ଶୋଭା ପାଇଥାଆନ୍ତା, କହୁଥିଲା ଯେ ବେଳେ ବେଳେ ସେ ଦୁଇଟାଙ୍କୁ ଦେଖିଲେ ଡର ମାଡ଼େ) ସେଥିପାଇଁ ବୋଧହୁଏ ଏମିତି ଆଗଚଲା ହୋଇଛନ୍ତି, ମାଲିକର ଅନୁମତି ବିନା ପରସ୍ପର ସାଙ୍ଗରେ ଖେଳନ୍ତି । କୁଞ୍ଚେଇ ହୁଅନ୍ତି, ଚଟାଚଟି କାମୁଡ଼ା କାମୁଡ଼ି ହୁଅନ୍ତି । ତେବେ ଗୋଟିଏ କଥା—ସେମାନଙ୍କର ଲୀଳାଖେଳା ଏଭଳି ବହୁଦର୍ଶୀ ଯେ ସହଜରେ ବୁଝି ହୁଏ ନାହିଁ ନିରଞ୍ଜନ ବାବୁ ରାଗୁଛନ୍ତି ନା କଷ୍ଟ ପାଉଛନ୍ତି, କାନ୍ଦିବାକୁ ଚାହୁଁ ନାହାନ୍ତି ନା ହସିବାକୁ ଚାହୁଁ ନାହାନ୍ତି । ସେଇଲାଗି ଆଜିକାଲି ପିଲାମାନଙ୍କ ଉଦ୍ଦେଶ୍ୟରେ ପାଟି ପାକୁ ପାକୁ କଲାବେଳେ କେହିହେଲେ ଭାବିପାରେ ଯେ ସେ ମନ୍ତ୍ର ପଢ଼ୁଛନ୍ତି । ଚେହେରାରେ ଆଉ ଦୁଇଟି ବସ୍ତୁ ଆଖିରେ ପଡ଼େ । ଅନତିଦୀର୍ଘ ନାକ ତଳେ ଚୂନ ଚୂନ କଟା ହୋଇଥିବା ଫିତା ନିଶ ଯାହା ସେ ନିଶ ଉଠିଲା ଦିନୁ ବଦଳାଇ ନାହାନ୍ତି, ସମାନ ସମତୁଲ କରି ରଖିଛନ୍ତି ଏବଂ ସାମାନ୍ୟ ବଢ଼ି ଉଠିଥିବା ପେଟ, ଯାହା କେବେଠୁଁ ସାମାନ୍ୟ ହୋଇ ରହିଛି, ଜଣାଇ ଦେଉଛି ଯେ ସେ ସମ୍ଭବତଃ ଅଧିକାରୀ, ପେଟୁଆ ନୁହନ୍ତି ।

ସର୍ବୋପରି ଏକ ବ୍ୟାପକ ଗମ୍ଭୀର ଅଭିବ୍ୟକ୍ତି—ଗ୍ରଲରେ କଥା କହିବାରେ ଫାଇଲରେ ନୋଟ୍ ଲେଖିବାରେ, ଏପରିକି ପ୍ରେମ କରିବାରେ । ସେ ସ୍ତ୍ରୀ, ପିଲା ସହକର୍ମୀମାନଙ୍କ ସାଙ୍ଗରେ ହସଖୁସି ନ ହୁଅନ୍ତି ନୁହେଁ, କିନ୍ତୁ ସେତେବେଳେ ମଧ୍ୟ ମନେ ହୁଏ ଯେ ସେ ନିଜକୁ କିଛିକ୍ଷଣ ପାଇଁ ଛୁଟି ଦେଇଛନ୍ତି । ଶୋଇବା ଶେଯରେ ପ୍ରେମ କଲାବେଳେ ତାଙ୍କର ହାବଭାବ ଆଉ କେହି ଦେଖିବାକୁ ନ ଥାଏ, ହେଲେ ସେ ନିଜେ ବୁଝିବାରେ ହେଳା କରନ୍ତି ନାହିଁ ଯେ ସେ କାର୍ଯ୍ୟ ସାଧନ କରିବାକୁ ଆସିଛନ୍ତି । ଗୋଲ୍ ଗୋଲ୍ ଅକ୍ଷରରେ ଧୀରେ ଧୀରେ ଭାବିଚିନ୍ତି ଲେଖିଲା ପରି ଲେଖିବେ ଓ ଲମ୍ବା ଦସ୍ତଖତ୍ ମାରିବେ । କାମ କରିବା ସାଙ୍ଗରେ କଥା କହିବା, ବାଜା ବଜେଇବା, ଗୀତ ଗାଇବା, ଛବି ଆଙ୍କିବା ଇତ୍ୟାଦିରେ ଢଙ୍ଗ ତାଙ୍କ ମନକୁ ପାଏ ନାହିଁ । ଲାଭ କଅଣ ? ଇଏ କଅଣ ଭିକ୍‌ଟୋରିଆ ସ୍ନୋର ବିଜ୍ଞାପନ ହୋଇଛି ଯେ ଫୁସୁଲେଇବାକୁ ପଡ଼ିବ ? ଚନ୍ଦ୍ରା କ'ଣ ମୋ' ସ୍ତ୍ରୀ ନୁହେଁ ନାଁ ମୁଁ ତାକୁ ଭଲ ପାଏ ବୋଲି ସେ ଜାଣେ ନାହିଁ ? ଅଯଥାରେ ସମୟ ନଷ୍ଟ କରିବା

ତାଙ୍କ ଧାତୁରେ ଯାଏ ନାହିଁ । ଚନ୍ଦ୍ରା ବସୁ ଆପଣାକୁ ସାନ୍ତ୍ୱନା ଦିଅନ୍ତି ଯେ ବାବୁ ଦିନେ ରୋମାଣ୍ଟିକ୍ ଥିଲେ, ଏବେ ରୋମାଣ୍ଟିକ ଥିଲେ ଯେ କାନରେ ଶୁଣି ହେବ ନାହିଁ ଏଭଳି ଅସଭ୍ୟ କଥା ମଧ୍ୟ କହୁଥିଲେ । ସେଇ ସମୟରେ ବେଳେ ବେଳେ ଗୋଟିଏ ଅଦ୍ଭୁତ ପ୍ରଶ୍ନ ତାଙ୍କ ମନକୁ ଆସେ—

ଯେ ଆନନ୍ଦ ବଢ଼ାଇବା ପାଇଁ ଅକାରଣରେ ଅସଭ୍ୟ କଥା କହି ପାରୁଥିଲା, ସେ ଆନନ୍ଦ ବଢ଼ାଇବା ପାଇଁ ଅକାରଣରେ ଗୀତ ଗାଇ ପାରିଲା ନାହିଁ କାହିଁକି ?

ଚେହେରା ଲଖି ବେଶ । ଅଫିସ୍‌ରେ ହାଲୁକା ରଙ୍ଗର ସୁଟ୍, ଖରାଦିନେ ସାର୍ଟ ଓ ଟାଇ (କମ୍ପାନୀ ଅଫିସର ଡ୍ରେସ୍ ଟାଇ ଅନିବାର୍ଯ୍ୟ, ଆଜିକାଲିର ଅଫିସରମାନେ ନ ମାନିଲେ ନାହିଁ) ଏବଂ ଘରେ ଧୋବ ଧୋତି ପଞ୍ଜାବି ।

ଅତିଶୟତା, ଅତିରଞ୍ଜନ, ରଙ୍ଗଢଙ୍ଗ ନାହିଁ । ଅଥଚ କେହି କହିବ ନାହିଁ ଯେ ବ୍ୟକ୍ତିତ୍ୱ କଲିକତା ଜନତାର ଧୂସର ଦେହରେ ଲେପି ହୋଇ ଯାଇଛି । ବ୍ୟକ୍ତିତ୍ୱକୁ ଖୋଜିବାକୁ ପଡ଼ିବ ନାହିଁ ।

କୌଣସି ଏକ ସନ୍ଧ୍ୟାରେ ଦେଖ ନିରଞ୍ଜନ ବାବୁ ଉପର ମହଲାର ଅଫିସରୁ ଓହ୍ଲାଇ ଫୁଟପାଥରେ ଛିଡ଼ା ହୋଇଛନ୍ତି । ଛିଡ଼ା ହୋଇ ଆକାଶକୁ ଲୋକମାନଙ୍କୁ ଦେଖୁଛନ୍ତି । ସାମାନ୍ୟ ବଢ଼ିଲା ପେଟ ଅନୁପାତରେ ଗୋରା ଚକ୍ ଚକ୍ ମୁଣ୍ଡ ମଧ୍ୟ ପଛକୁ ଚାଲି ଯାଇଛି । ମୁଣ୍ଡରେ ଥିବା ଯତ୍ନକଞ୍ଚିତ କେଶ ଫୁରୁଫୁରୁ ହୋଇ ପାରୁନାହିଁ, ଟାଇ ଟାଇ-ପିନରେ ବନ୍ଧା ହୋଇ ଉଡ଼ି ପାରୁନାହିଁ । ନିରଞ୍ଜନ ବାବୁଙ୍କର ବ୍ୟକ୍ତିତ୍ୱ ସ୍ଥିର ହୋଇ ଉଚ୍ଚ ହୋଇ ଆକାଶ ତଳକୁ ଜନତା ଉପରକୁ ଅନେଇଛି । ମୁଁ ଅଛି ।

ଇମେଜ୍ ସେମିତି ଅଛି । ଠିକ୍ ଅଛି । ଦର୍ପଣରେ ଦେଖିଲେ ଯାହା ଫୁଟପାଥରେ ଛିଡ଼ା ହୋଇ ରହିଲେ ସେଇଆ । ଘରେ ଚନ୍ଦ୍ରା ସାଙ୍ଗରେ ଘରକରଣାର ଅର୍ଥନୀତି କମ୍ପା ପୁଅ ଖୋକନକୁ ଆଗାମୀ ଦିନର କର୍ତ୍ତବ୍ୟ ଶୁଣେଇଲେ ସେଇଆ । ଦଣ୍ଡେ ରହିଯାଇ ନିଜକୁ ସ୍ମରଣ କଲେ ନିରଞ୍ଜନ ବସୁ ନିରଞ୍ଜନ ବସୁଙ୍କୁ ଦେଖନ୍ତି । ଦେଖି ସାବାସ୍ ଦିଅନ୍ତି, ସାବାସ୍ ଦିଅନ୍ତି, ହେଲେ ବେଳେବେଳେ ଆଶ୍ଚର୍ଯ୍ୟ ହୁଅନ୍ତି—ଏମିତି କେମିତି ହେଲା ? କଞ୍ଚା ଯୌବନ

ସକଳ ପରେ  ପରେ  ଯେଉଁ  ବଡ଼ପଣ  ଗଢ଼ି ଉଠିଲା ସେଥିରେ ଆଜଯାଏ କେଉଁଠି ଟିକିଏ ଆଞ୍ଚ ଲାଗିଲା ନାହିଁ ! କମ୍ପାନୀ ମଧ୍ୟ ତା'ର ଇମେଜ୍ ପୁରାପୁରି ଧରି ରଖି ପାରିନାହିଁ, ନୂଆ ଚିଫ୍ ଆକାଉଣ୍ଟାଣ୍ଟଙ୍କ ଚର୍ଚ୍ଚିଆ ବ୍ରୁସ୍ ସାର୍ଟକୁ ଦେଖ' କାଣ୍ଟିନ୍‌ରେ ହୋ ହୋ ମାଛ ହାଟକୁ ଦେଖ ଫାଇଲମାନଙ୍କର ଫିତାକୁ ଦେଖ, ଆଉ କାହା କଥା ଛାଡ଼ । କଲିକତାର ଇମେଜ ବଦଳୁଛି, ଲାଲ୍ ସରକାର ନେଳିଆ ପଡ଼ିଲାଣି, କାଳବୈଶାଖୀ ରବିନ୍ଦ୍ରନାଥ କର୍ପୋରେସନ ଗାର୍ବେଜ ଇତ୍ୟାଦିଙ୍କର ଆଗ ଚେହେରା କୁଆଡ଼େ ଗଲାଣି, ଚନ୍ଦ୍ରାର ବକବକ କେତେ କମି ଗଲାଣି । ଚଳନ୍ତି ଜୀବନରେ କେତେ ନୂଆ ଲୋକ ଆସିଲେଣି ଗଲେଣି ଅଥଚ......

ମୁଁ ଅବିକଳ ସେମିତି ଅଛି !

ମୁଁ ସେମିତି ଅଛି ଆଉ ଏଇ ପିଲାଗୁଡ଼ାକ ଆହୁରି ଆହୁରି ହସୁଛନ୍ତି, ହସି ଚାଲିଛନ୍ତି !!

(ପ୍ରକୃତ ପକ୍ଷେ ନିରଞ୍ଜନ ବାବୁ ଅବିକଳ ସେମିତି ନାହାନ୍ତି । ନିରେଖି ଦେଖିଲେ ଜଣା ପଡ଼ିବ ଯେ ତାଙ୍କ ଓଠ ଦୁଇଟିଙ୍କ ଗତିଶୀଳତା ଅନେକ ବଢିଗଲାଣି, ମନେହେଉଛି ସେମାନେ କର୍ତ୍ତାର କବଳରୁ ଖସି ଗଲେଣି, ତାଙ୍କୁ ଆଉ ପାରି ହେବ ନାହିଁ । କିନ୍ତୁ ଦୁଃଖର ବିଷୟ ନିରଞ୍ଜନ ବାବୁ ସେମାନଙ୍କର ଅଭିସନ୍ଧି ଜାଣି ପାରିଲେ ନାହିଁ ।)

କ୍ରମଶଃ ନିରଞ୍ଜନ ବାବୁ ନିଜର ନିଖୁଣ ଅପରିବର୍ତ୍ତନୀୟ ଚେହେରା ଇମେଜ୍‌କୁ ଅନୁଧ୍ୟାନ କରି ବିରକ୍ତ ହୋଇ ଉଠିଲେ, ସତେକି ଅଯଥାରେ ତାଙ୍କୁ ଏମିତି ପରଖିବାକୁ ପଡ଼ୁଛି, ଗୋଟାଏ ଛଠାକୁ ବାରମ୍ବାର ଦେଖି ସହ୍ୟ କରିବାକୁ ପଡ଼ୁଛି ଅଥଚ କମାଟିଏ ପୂର୍ଣ୍ଣଚ୍ଛେଦଟିଏ ବଦଳେଇବାକୁ ନାହିଁ । ପିଲାମାନେ ହସିଲେ ହସନ୍ତୁ ମୋତେ ଏଇ ଘସରା କାମ କିଏ କରିବାକୁ କହୁଛି ? କାହିଁକି ?

କାହିଁକି ???

ଥରେ ନିରଞ୍ଜନ ବାବୁ ଦର୍ପଣକୁ ଚାହିଁ କାହିଁକି ବୋଲି ପାଟି କରି ଉଠିଲେ । ଶବ୍ଦ ଆଉ କାହାକୁ ହୁଏତ ଶୁଣାଯାଇ ନ ଥିବ, କିନ୍ତୁ ନିଜ ଶ୍ରବଣକୁ ବିଦାରି ଦେଲା । ଜାଗ୍ରତ ଦୁଇ ଆଖି ଜାଗ୍ରତ ଦୁଇ ପ୍ରଶସ୍ତ କପାଳ ଆଖିକୁ କଟମଟ କରି ଚାହିଁଲା, କହିଲା ବଟନ୍ ଆଖି ବଟନ୍ ଆଖି । ପ୍ରଶସ୍ତ କପାଳକୁ ଛୁଇଁଲା ପରି

ହେଲା, କହିଲା ଘସାମଜା ପିତଳ କଡ଼େଇର ଗାଣ୍ଠି, ହିଃ ହିଃ । ଫିଡାନଣ ଫିଡାନଣର ଥୁଣ୍ଟା କାଠି ପାଚଲା କୁଣ୍ଟାଲୁ ଗଣିବାକୁ ବସିଲି, ଦେଖେ ଦେଖେ ଆହୁରି ଦେଖେ, ଉକୁଣି ଥିବେ ପରା । ଏବଂ ଦୁଇଯୋଡ଼ା ଓଠ ଏକ ଆପଣାକୁ ଦେଖି ଏମିତି ବାଙ୍କେଇ ଧରିଲେ ଯେ ମନେହେଲା ସେମାନେ ଖଚେଇ ହେଉଛନ୍ତି । ହିଁ, ନିରଞ୍ଜନ ବାବୁ ଟଏଲେଟ୍ ଦର୍ପଣରେ ନିଜକୁ ଖଚେଇ ହେଲେ । ଦରଖୋଲା ଝରକାବାଟେ ଅନ୍ୟ କେଉଁ ଝରକାରୁ ଛାତ ଉପରୁ କିଏ ତାଙ୍କ କାର୍ଯ୍ୟକଳାପ ଦେଖି ପାରୁଥିବ ବୋଲି ବିଚାରିଲେ ନାହିଁ । କେତେବେଳ ହେଲାଣି ଟଏଲେଟରେ ପଶିଛନ୍ତି କିଏ କ'ଣ ଭାବୁଥିବ ବୋଲି ପରୁଆ କଲେ ନାହିଁ । ଲଗିପଡ଼ି ଖଚେଇ ହେଲେ । ଜିଭ କାଢ଼ିଲେ । ଦାନ୍ତ ଗିଜିଡ଼ିଲେ, ନାକ କୁଞ୍ଚେଇଲେ, ଆଖି ଦେଖେଇଲେ ଆଉ କହିଲେ – ଛୁ ଅସନା ! ଛୁ ଗନ୍ଧିଆ ! ଛୁ ମିଛ ! ଛୁ ମିଛ !

ସେଦିନ ଘରେ ପହଞ୍ଚି ସେ ଝରକା ବନ୍ଦ କରି ବାଥରୁମ ଦର୍ପଣରେ ପୁଣି ଥରେ ନିଜକୁ ଦେଖିଲେ । କିନ୍ତୁ ଏଥର ସେ ଖଚେଇ ହେଲେ ନାହିଁ । ଲାଭ ନାହିଁ । ସେମିତି କଲେ କେତେ ନ କଲେ କେତେ, ମୁଁ ଜାଣିଛି । ତଥାପି ଅଛି ଅସନା ଅଛି, ଗନ୍ଧିଆ ଅଛି ।

ନିରଞ୍ଜନ ବାବୁ ବୁଦ୍ଧିବାଦୀ ଶିକ୍ଷିତ । ସେ ବୁଝିପାରିଲେ ଯେ ନିଜର ମାନସିକ ଅବସ୍ଥା କାହାରି ଆଗରେ କହି ହେବ ନାହିଁ । ସେମାନେ ଭାବିବେ ମୁଁ ପାଗଳ । ସତେକି ପିଲାମାନଙ୍କ ହସରେ କେହି କେବେ ଉଦ୍‌ବ୍ୟକ୍ତ ହୋଇ ନାହାନ୍ତି ନିଜ ଚେହେରାକୁ ଅନେଇ ଖଚେଇ ହୋଇ ନାହାନ୍ତି । ସତେକି କାହାରି ଦେହ କେବେହେଲେ ଓଜନିଆ ହୋଇ ବସି ପଡ଼ିଥିବା ବାଲିବାଲୁଆ ପାହାଡ଼ ପରି ମୋତେ ଦେଖନାହିଁ, ଦେଖନାହିଁ ବୋଲି କହି ନାହିଁ, ଆଉ ସେମାନେ, ଫୁର୍ ଫୁର୍ ମେଘମାନେ ଚଢ଼େଇମାନେ, ହସି ନାହାନ୍ତି ।

ମୁଁ ଜାଣିଲି ମୁଁ ହାରି ଯାଇଛି । ଫେଲ୍‌ଓର୍ । ତା' ବୋଲି ମୁଁ କ'ଣ ତମ ଆଗରେ ଫେରାଦ ହେବି ? କେଉଁ ମୁଣ୍ଡ ଡାକ୍ତରକୁ କହିବି ମୋର ଅତୀତକୁ ଘାଣ୍ଟି ଚକଟି ଦେଖାଇ ଦେବ ମୋର ବିଫଳତା କେଉଁଠି, କେମିତି, କାହିଁକି ? ସେ କଣ କହିବ ମୋତେ ଜଣାଅଛି । କହିବ ମୁଁ ଗ୍ରେଡିଆ ଅଫିସର ହୋଇ ରହିଗଲି, ଶିଖରକୁ ଉଠି ପାରିଲି ନାହିଁ, ସେଥିପାଇଁ କାର୍ ଖଣ୍ଡେ କିଣି ପାରିଲି ନାହିଁ, ବସ୍‌ରେ ଚଢ଼ି ଅଫିସକୁ ଆସୁଛି, ସେଥିପାଇଁ । କହିବ ଚନ୍ଦ୍ରା ଅତି ଚନ୍ଦ୍ରା ଅତି ସାଧାରଣ ସ୍ତ୍ରୀ ହୋଇ ରହିଗଲା, ଅନ୍ୟ କେଉଁ ସ୍ତ୍ରୀ ସାଙ୍ଗରେ ପ୍ରେମ କରିବାକୁ

ସାହସ ହେଲ ନାହିଁ (ବାଳେ କଥା, ସ୍ଥାନ ବୃତ୍ତି କରିବାରେ ସାହସ ଲୋଡ଼ା ନାହିଁ) ସେଇଥି ପାଇଁ ନୁହେଁ ତ ? ବଚସ୍ କିଛି କେଉଁଠି ନ ପାଇ ଧନ୍ଦାଳ ହେବ । ହୁଏତ ମୋର ପିଲଙ୍କୁ ନେଇ ଥିଓର ବାଢ଼ିବ । କହିବ ପୁଅ ଭଲ ପଢ଼ୁଛି ସିନା, କିନ୍ତୁ ସେ ମୋ ପାଖରେ କଥା କୁହେ ନାହିଁ, ସେଇ ଗୋଟିଏ ପିଲା ଯେ କି ମୋ ଆଗରେ ହସେ ନାହିଁ, ତା'ର ପିତୃଭକ୍ତିକୁ ଦେଖି ଦେଖି ମୋର ଏଇ ଅବସ୍ଥା । ଭାବିଥିଲି ଝିଅ କଳାର ପ୍ରତିମା, କେତେ ଭଲ ନାଚ ଗୀତ ଆଳର ଚମକ ଦେଖାଇ ପୃଥିବୀକୁ ମୁଗ୍ଧ କରିବ, ଅଥଚ ବାହାହେଲା ପରେ ସେ ମସଲାକୁଟା କଳ ଖୋଜୁଛି, ଆଉ ତା ପିଲାର କାଣ ସର୍ଦ୍ଦିଝାଡ଼ା ବାଲ୍ଟି ନେଇ ଲମ୍ବା ଲମ୍ବା ଚିଠି ଲେଖୁଛି । ତାର ପ୍ରଚଣ୍ଡ ଘରକରଣାକୁ ଦେଖି ମୋର ମୁଣ୍ଡ ଖରାପ ହୋଇଗଲା ବୋଲି କହିବ, ଅସମ୍ଭବ ନୁହେଁ ।

ପଣ୍ଡିତିଆ ଡାକ୍ତର ହୋଇଥିଲେ ଗମ୍ଭୀରଆ ଅପୂରଣର ଦୁହାଇ ଦେଇ ମୋତେ ଧନ୍ୟ କରିବ । ଯଥା—ସ୍ୱାଧୀନ ଭାବରେ ମୁଁ ଲାଭଖୋର ବିଲାତି କମ୍ପାନୀର ଚାକର ହୋଇ ରହିଗଲି । କଲିକତା ପଡ଼ିଲା ଉଠିଲା, କିନ୍ତୁ ମୁଁ କିଛି ଗୋଟାଏ ବଡ଼ କଥା ପାରିଲି ନାହିଁ, କହି ପାରିଲି ନାହିଁ···ମୋତେ କେହି ଚହ୍ନିଲେ ନାହିଁ ।

ଏତକ ନା ଆଉ କ'ଣ ଅଛି ? ବାବୁ ତମ ପାଠର ଯେତକ ଫରମୂଲା କାରସାଦି ମୋତେ ଜଣା ଅଛି । ମୁଁ ସେଥିରେ ପଶିବି ନାହିଁ ।

ମୁଁ କାହା ପାଖକୁ ଯିବି ନାହିଁ । ନିରଞ୍ଜନ ବସୁ କାହାର ଶରଣ ପଶିବ ନାହିଁ । ମୁଁ ଜାଣେ ମୁଁ କେମିତି ନିଜକୁ ମୋର ଚେହେରାକୁ ଲୁଚେଇ ଦେବି, ହଜେଇ ଦେବି । କେହିଁ ତା'ର ଭେଦ ପାଇବେ ନାହିଁ ।

ନିରଞ୍ଜନ ବାବୁ ଗମ୍ଭୀର ନିଷ୍ଠା ଏବଂ ଆନ୍ତରିକତା ସହ ସ୍ୱାଳାସ୍ଥ-ପର୍ବ ଆରମ୍ଭ କରିଦେଲେ । ନିଜକୁ କହିଲେ ଯେ ଗଢ଼ିବା କାମ ଭାଙ୍ଗିବା କାମ ଭିନ୍ନ ନୁହେଁ, କାମ ହେଉଛି କାମ । କାମ ତୁଲେଇବାରେ ନିରଞ୍ଜନ ବସୁଙ୍କୁ କେହି ବଳିଯିବ ନାହିଁ ।

ପ୍ରଥମେ ଘର ମଣିଷ । ପତ୍ନୀ ଚନ୍ଦ୍ରା । ବସୁ । ସେଦିନ ରାତିରେ ଚନ୍ଦ୍ର ନ ଥିଲା, ତାରାମାନେ ମଧ୍ୟ କୁହୁଡ଼ିଆ ମେଘ ଭିତରେ କୁଆଡ଼େ ଲୁଚି ଯାଇଥିଲେ । କିନ୍ତୁ ନିରଞ୍ଜନ ବାବୁ ଝରକା କବାଟ ଖୋଲିଦେଇ ସେମାନଙ୍କୁ ଆହ୍ୱାନ କଲେ । ଆସ, ଇଚ୍ଛାଥିଲେ ଆସ, ଆମ ଶୋଇବା ଶେଯରେ ଲେଟିଯାଅ, କହିବ ଯଦି ଗୀତ ବୋଲିବି, ନାଚିବା ଘୁମାଲେ ପ୍ରିୟ— । ନିରଞ୍ଜନ ବାବୁଙ୍କର ମନେପଡ଼ିଲା ନାହିଁ

ସେ ଶେଷଥର କେବେ ଗୀତ ଗାଇଥିଲେ । କିନ୍ତୁ ସେ ପ୍ରସ୍ତୁତ ହେଲେ । ଯଦି ଚନ୍ଦ୍ରା ଗେହ୍ଲେଇ ହୋଇ ଫରମାଏସ୍ କରେ ତାହା ହେଲେ ମୁଁ ନିଶ୍ଚୟ ଗେହ୍ଲେଇ ହୋଇ ଗୀତ ଗାଇ ପାରିବ ।

ଝରକା ଖୋଲା ପଡ଼ିଥିବାର ଦେଖି ଚନ୍ଦ୍ରାଦେବୀ ବନ୍ଦ କରିବାକୁ ଗଲେ । ତାଙ୍କୁ ନିଜକୁ ରାତି ଆକାଶ ରାତି ପବନର ଆଉଁସା ଭଲଲାଗେ । ତେବେ ଅନେକବର୍ଷ ହେଲାଣି ସେ ଜାଣି ଗଲେଣି ଯେ ସ୍ୱାମୀଙ୍କୁ ଭଲ ଲାଗେ ନାହିଁ । ତାଙ୍କ ଦେହରେ ଯାଏ ନାହିଁ, ତାଙ୍କୁ ନିଦ ହୁଏ ନାହିଁ । କେମିତି କେଜାଣି ଖୋଲା ପଡ଼ିଛି ଭାବି ସେ ବନ୍ଦ କରିବାକୁ ଗଲେ । ପୂର୍ବରୁ ବିଛଣାରେ ଆସି ଗଡ଼ିଥିବା ସ୍ୱାମୀ କହିଲେ—ଥାଉ ।

ଚନ୍ଦ୍ରାଦେବୀ ବିସ୍ମିତ ହେଲେ ନିଶ୍ଚୟ, କିନ୍ତୁ ପ୍ରଶ୍ନ ପଚାରିଲେ ନାହିଁ । କାହିଁକିନା ତାଙ୍କର ଆକାଶକୁ ଦେଖି ଲୋଭ ହେଲା । ଭୟ ହେଲା କାଳେ ବାବୁ ପୁନର୍ବିଚାର କରି କହିବେ—ଆଚ୍ଛା ହେଉ, ବନ୍ଦ କରିଦିଅ ।

ଚନ୍ଦ୍ରାଦେବୀ ଅଧିକତର ବିସ୍ମିତ ହେଲେ ଯେତେବେଳେ ତାଙ୍କର ମନେହେଲା ସ୍ୱାମୀ ତାଙ୍କର ପିଠି ଓ ମୁକୁଳା କେଶକୁ ଆଉଁସୁଛନ୍ତି । ସେ କଡ଼ ଲେଉଟାଇ ପାରିଲେ ନାହିଁ ।

ନିରଞ୍ଜନ ବାବୁ ଧୀରେ ହାତକୁ ବୁଲେଇ ବୁଲେଇ ଆଉଁସୁଥିଲେ । ଭାବୁଥିଲେ ଆଉଁସୁଥିବ, ଥକି ଯିବନାହିଁ । ଆଉଁସୁ ଆଉଁସୁ ତାଙ୍କର ଧାରଣା ହେଲା କାମନାର ମୁଣ୍ଡ ବଙ୍ଗିଡ଼ି ଗଲାଣି, କାରଣ ଚନ୍ଦ୍ରାର ମୁକୁଳା କେଶରୁ ବାସ୍ନା ଆସୁଛି, ଇଚ୍ଛା ହେଉଛି ତାକୁ ଶୁଙ୍ଘିବି । କାଲ୍ଷାରେଡାଇନ୍ ବାସ୍ନା ନୁହେଁ, ଝାଳର ଗନ୍ଧ ନୁହେଁ । ବାସ୍ନା-ଗନ୍ଧ ଅତିକ୍ରମ କରି କେଉଁ ନିବିଡ଼ ନିଃସ୍ୱ ଅଭିଳାଷର ଅସ୍ୱୀକାରମନ୍ତ୍ର, ଯେମିତିକି ପରମଭକ୍ତ ପ୍ରଥମେ ଗରୁଡ଼ଧ୍ୱଜରେ ମନ ଭରି ମୁଣ୍ଡିଆ ମାରିବାକୁ ଚାହେଁ । ନିରଞ୍ଜନ ବାବୁ ନିଜକୁ ବିଶ୍ୱାସ କରିପାରିଲେ ନାହିଁ । ଏ କି ଅଭିନବ କଥା ମ ! ମୋର କ'ଣ ହୋଇଛି ? ହଉ, କିଛି ନାହିଁ । ମୁଁ ଥକିଯିବି ନାହିଁ । ମୁଁ ମୋର କାମରେ ହେଲା କରିବି ନାହିଁ । ଏଏ ଭିନ୍ନ ନିରଞ୍ଜନ, ଦୋସର୍ ଇମେଜ୍ ।
ନିରଞ୍ଜନ ବାବୁ କେଶରାଶିରେ ନାକ ପସିଲେ, ମୁହଁ ଘୋଡ଼େଇଲେ ।

ତଥାପି ଚନ୍ଦ୍ରାଦେବୀ କଡ଼ ଲେଉଟାଇବାକୁ ନାହାନ୍ତି । ନିରଞ୍ଜନ ବାବୁ ଧୈର୍ଯ୍ୟକୁ ମୁଠେଇ ଧରିଲେ । ନା, ମୁଁ ହାରିଯିବି ନାହିଁ । ତାହାହେଲେ ମୁଁ କଅଣ ତାକୁ ନାଆଁ ଧରି ଡାକିବି ? ଚନ୍ଦ୍ର ବୋଲି ଡାକିବି, ନା ମୋ ଗେହ୍ଲା ଡାର୍ଲିଙ୍ଗ୍... ଧାତ୍ ! ନିରଞ୍ଜନ ବାବୁ ପ୍ରାଣପଣେ ଚେଷ୍ଟା କଲେ କିଛି କହିବେ ।

ସେ ହୁଏତ ପଦୁଟିଏ କ'ଣ କହିଥାଆନ୍ତେ । କିନ୍ତୁ ତାଙ୍କର ଏକ କୁତ୍ସିତ ସନ୍ଦେହ ହେଲ । ଚନ୍ଦ୍ରା କାନ୍ଦୁଛି । ସୁଁ ସୁଁ ହେଉଛି ।

ନିରଞ୍ଜନ ବାବୁ କାନ୍ଦଣା ସହ୍ୟ କରିପାରନ୍ତି ନାହିଁ, ବିଶେଷତଃ ସ୍ତ୍ରୀ ଲୋକ-ମାନଙ୍କ କାନ୍ଦଣା । ସ୍ତ୍ରୀ କାନ୍ଦଣା ଦେଖିଲେ ତାଙ୍କର ମନେ ହୁଏ ଯେ ମାଟି କାଦୁଅ ହେବାକୁ ବସିଛି, ପାନସାନ ହେବାକୁ ଧମକାଉଛି । ସତେ କି ଏମିତି ହେଲେ ଆକାଶ ଧସିଯିବ, ଭଗବାନ ମାଇଚିଆ ହୋଇଯିବେ । ଅଯଥାରେ ଢଙ୍ଗ ବାହାର କରୁଛି ବୋଲି କହି ସେ ମନକୁ ଅନ୍ୟଆଡ଼େ ନଥାନ୍ତି । ଆଜି କେବଳ ସେତିକି ନୁହେଁ । ଆଜି ମୋର ସ୍ତ୍ରୀ ମୋତେ ଦୋଷ ଦେଉଛି । ଏତେ କଲି ତଥାପି ଦୋଷ ଦେଉଛି ।

ମୁଁ ନିଜକୁ ମିଶେଇବି ବୋଲି କ'ଣ ଚୂନା ଚୂନା କରି କାଟି ତା'ହାତରେ ଧରେଇ ଦେବି ?

ଝରକା ଖୋଲା ହୋଇ ରହିଲା, ହେଲେ ନିରଞ୍ଜନବାବୁ ଅଟକିଗଲେ । ରାଗରେ ଓଠ ଦୁଇଟା ଅସମ୍ଭାଳ ହୋଇ କେତେ ଖେଳ ଖେଳିଲେ, ସେଇଠୁ ଶୋଇପଡ଼ିଲେ ।

ପରଦିନ ସକାଳେ ପୁଅ ସାଙ୍ଗରେ ଇମେଜ୍‌ଭଙ୍ଗା ଏକ୍‌ସପିରିମେଣ୍ଟ ବେଶି ଦୂର ଗଲା ନାହିଁ । ଖୋକନ କଲେଜ ବାହାରିଲାବେଳକୁ କ'ଣ ଖୋଜୁଥିଲା, ନପାଇ ଲଣ୍ଡଭଣ୍ଡ ହେଉଥିଲା । ନିରଞ୍ଜନବାବୁ ତା' ଆଡ଼କୁ ସ୍ନେହ ସସ୍ମିତ ବଦନରେ କହିଲେ, "କ'ଣ ଖୋଜୁଛୁ ? ସିଗାରେଟ୍ ? ନା ଇଉ-ଡ଼ି-କୋଲନ୍ ? ମୋ ଡ୍ରେସିଙ୍ଗ୍ ଟେବୁଲରେ ଅଛି, ନେଇଯାଅ ।" ଏଇ ସାମାନ୍ୟ ସଦୟ ବ୍ୟବହାର କ'ଣ ତା' ଦେହରେ ଗଳି ଗଲା ? ପଟ୍ଟ ଅଣ୍ଟାପରି ଲଗିଲା ? ନହେଲେ ସେ ଏମିତି ଚମକି ଉଠି ମୁହଁ ବିଚକଟିଆ କରି ପଳେଇଗଲା କାହିଁକି ?

ନିରଞ୍ଜନବାବୁ ଭାବିଚାଲିନ୍ତି ଏଇ ନିଷ୍ପତ୍ତିରେ ପହଞ୍ଚିଲେ ଯେ ଏଇ ନୂତନ ଉଦ୍ୟମ ଘର ମଣିଷଙ୍କୁ ନେଇ ସଫଳ ହୋଇପାରିବ ନାହିଁ । ସେମାନେ ମୋର ଇମେଜ୍‌କୁ ମାନିନେଇଛନ୍ତି । ସେଥିରେ ଟିକିଏ ଏପାଖ ସେପାଖ ହେଲେ ହ୍ୟାପ ତରକି ଉଠୁଛନ୍ତି ।

ଭଲକଥା । ମୁଁ ତାହାହେଲେ କମ୍ପାନି ଅଫିସରେ କମ୍ପାବର୍ ବ୍ୟବହାରରେ ନିଜକୁ ମିଶେଇ ଦେବି, ଦେଖେଇ ମୋ ଇଚ୍ଛା ମୁଁ ଯାହା କରିବି,

ସେଥିରେ ମୋ ସ୍ତ୍ରୀ ପିଲା, ଭାଇ ବନ୍ଧୁ କୁଟୁମ୍ବ, ମୋର ମଲାବାପ, କେବେଠୁ ମଲେଣି କେଜାଣି, ଆଉ ମୋର ମଲା ମାଆ କହୁଥିଲା ତା'ର ଅନାହାର ପଡ଼ୁଥିଲା ଯେ କେତେଦିନ ଯାଏ କେଉଁ କାଳୁମାଆ କେଉଟୁଣୀ ପାଖରୁ ଦୁଧ ଖୁଆଉ ଥିଲା, କାହାର କିଛି କହିବାର ଅଧିକାର ନାହିଁ ।

ତେଣୁ ନିରଞ୍ଜନ ବାବୁ ଦୃଢ଼ପ୍ରତିଜ୍ଞ ହୋଇ ବାହାର ଲୋକମାନଙ୍କୁ ଗୋଟି ଗୋଟି କରି ଦେଖିବାକୁ ଲାଗିଲେ । ଏଇମାନେ ଏଇ ଅପର ଅନ୍ୟମାନେ, ଯେଉଁମାନେ ମୁଁ ନୁହନ୍ତି, ମୋର ନୁହନ୍ତି, ହେଲେ ବଞ୍ଚିଛନ୍ତି, ଏଇମାନଙ୍କ ଠେଇଁ ମୁଁ ନିଜକୁ ମିଶେଇ ଦେବି ।

ହେଲେ କାହାଠେଇଁ ମିଶେଇବି ? କେମିତି ମିଶେଇବି ? ଧରି ଏଇ ଯେଉଁ ନିଶୁଆ, ମାରଣା ଷଣ୍ଢ ପରି ଦେଖାଯାଉଛି, ବସ୍ ଧରିବା ପାଇଁ ଧପାଉଛି, ମୁଁ ନିଜକୁ ତାରି ପରି କରିଦେବି, ତାରି ସାଙ୍ଗରେ ଧପାଇବି, ସେମିତିକା ଅଭଦ୍ର ଆଉ ଅସନା ? ଏଇ ଯେଉଁ ଗୋଲିଆ ତେଲିଆ ଦୋକାନୀ ମାଛିମଖା ମିଷ୍ଟାନ୍ନ-ମାନଙ୍କର ପହରା ଦେଇ ହାଇ ମାରୁଛି । ମୁଁ ନିଜକୁ ତାରି ପରି କରି ଦେବି, ତାରି ସାଙ୍ଗରେ ହାଇ ମାରିବି, ସେମିତିକା ଅଲସୁଆ ଆଉ ଅସନା ? ଏଇ ଯେଉଁ ଫିଟ୍‌ଫାଟ୍ ଦେଶୀ ସାହେବ ଲମ୍ବା କାର୍‌ରୁ ଓହ୍ଲାଇ ଉପରମୁହାଁ ହୋଇ ଗ୍ରାଣ୍ଡ ହୋଟେଲ୍ ପାହାଚରେ ଚଢ଼ୁଛି ମୁଁ ସେମିତି ହେବି, ଉପରବାଲା ଆଉ ଅସନା ? ନା ଏଇ ଅମଣିଷ ଅଭାଗା ଭିକାରୀ, ଜନ୍ମ-ଅସନା ? ହେ ଭଗବାନ୍ । ମୁଁ ସେଥିରୁ ଗୋଟିଏ 'ମୁଁ'ରେ ମିଶିଯିବି କାହିଁକି ? ସେମାନେ ପ୍ରତ୍ୟେକ ମୋଠାରୁ ଆହୁରି ଗନ୍ଧିଆ, ଅସନା, ମୁଁ ସତ କହୁଛି···

ନିରଞ୍ଜନ ବାବୁ କେତେଦିନ ଧରି ଏମିତି ନିରେଖିଲେ ଏବଂ ନିରାଶ ହେଲେ । କିନ୍ତୁ ସେ ଇମେଜ୍‌ର ବିଦ୍ରୋହକୁ ନିଷ୍ଠୁର ହୋଇ ପରି ଦମନ କଲେ । କହିଲେ—ମୁଁ ଥକିଯିବି ନାହିଁ । ମୁଁ ପଣ କରିଛି ।

ଥରେ ଅଧେ ତାଙ୍କ ମନରେ ଭଲ ଲାଗିବାର ଭାବ ଆସିଲା, ମନେ ହେଲା ଏଇଠି କେଉଁଠି ନିଜକୁ ମିଶେଇ ଦେଲେ ଶାନ୍ତି ଲାଗିବ ପରା । ଯେମିତି ସେ ଦିନେ ବଇଶାଖୀ ଖରା ମଉଳିଲା ପରେ ସାନ ସାନ କେତୋଟି କୁଢ଼ିଆ ଘର ସାମନାରେ ଥିବା ଗୋଟିଏ କଳା-ଲୁହା ପାଣିକଳରୁ ପାଣି ଝରିବାର ଦେଖିଲେ । କଳାକଳା ଲୋକମାନେ ଆନନ୍ଦରେ ତାକୁ ବେଢ଼ିଯାଇଛନ୍ତି । ଆଉ ତା' ସାଙ୍ଗରେ ଶୀତଳରେ ଗୋଧୂଳିରେ ଆର୍ଦ୍ର ହୋଇ ମିଶି ଯାଇଛନ୍ତି । ଏକ ଅପର ସାଙ୍ଗରେ ମିଶି ଛବି ହୋଇ ଯାଇଛନ୍ତି । ନିରଞ୍ଜନ ବାବୁଙ୍କର ମନେ ହେଲା ସେ ମଧ୍ୟ ସେ ଦୃଶ୍ୟରେ ଲେପି

ହୋଇ ଯାଆନ୍ତେ । ଆଉଥରେ ଗୋଟିଏ ପତାକାଧାରୀ ଶୋଭାଯାତ୍ରାକୁ ଦେଖି ତାଙ୍କର ସେମିତ ମନେହେଲା । ସେଠି ଶୃଙ୍ଖଳା ଭାବ ନାହିଁ । ତଥାପି ତାଙ୍କୁ ଭଲ ଲଗିଲା । ଇଚ୍ଛା ହେଲା ସେଇଠି ନିଜକୁ ହଜେଇ ଦେଲେ ହୁଅନ୍ତା, ଇମେଜ୍ ଆଉ ଅପନା ଗୋଟାଏ ଧ୍ୱନିରେ, ଧ୍ୱନିର ଆବେଗରେ ମିଶି ଯାଆନ୍ତା । ହେଲେ ସେଇ ମୁହୂର୍ତ୍ତଗୁଡ଼ିକୁ ମନେ ପକାଇ ନିରଞ୍ଜନ ବାବୁଙ୍କୁ ଭୟ ଲଗିଲା—ଯେ ଏଇସ୍ତ୍ରୀକୁ ମରଣ କୁହନ୍ତି । ଯେତେବେଳେ ମଣିଷ ଛବିରେ, ଧ୍ୱନିରେ, କାଳରେ ମିଶି ଯିବାକୁ ଲୋଭ କରେ···ନା, ନା, ରକ୍ଷାକର । ମୁଁ ମରିବାକୁ ଖୋଜୁ ନାହିଁ, ମୁଁ ତୁହିଁଛୁ ମିଶିଯିବି, କେଉଁଠି କାହା ସାଙ୍ଗରେ ମିଶିଯାଇ ନିଜକୁ ନୂଆ କରିଦେବି, ଆଉଜଣେ ହୋଇଯିବି । ପୁଣି ଜଣେ ହୋଇ ରହିବି, ମରିବ ନାହିଁ । ନିରଞ୍ଜନ ବାବୁ ଆତଙ୍କରେ ନିଜକୁ ଟାଣି ଧରିଲେ, ଏମିତ ନୁହେଁ ଏମିତ ନୁହେଁ ବୋଲି ଦୋହରାଇଲେ ।

ଅଫିସ ଲୋକ । ସବୁଠାରୁ ଘୃଣିତ ସେଇମାନେ, କମ୍ପାନୀର ସହକର୍ମୀଗଣ । ବସାକ୍, ମାନୁ ମିଶ୍ର, ସତ୍ୟ ମୂର୍ତ୍ତି, ଇନ୍ଦର୍ ସିଂ, ରାଜା ସାହେବ ଓରଫ୍ ଆଦିତ୍ୟ ନାରାୟଣ ଓଗେ‍ର । ସେମାନଙ୍କ ସାଙ୍ଗରେ ହସଖୁସି ହେବାକୁ ତାଙ୍କର ଆଦୌ ଇଚ୍ଛା ନ ଥିଲା । କିନ୍ତୁ ସେ ସ୍ଥିର କରିଥିଲେ ଥକି ଯିବେ ନାହିଁ, କାହାର ସଙ୍ଗ ବର୍ଜନ କରିବେ ନାହିଁ···ନହେଲେ ଆପଣା ଭୂତ ପୁଣି ମୋ ଉପରେ ଚଢ଼ି ବସିବ, ମୋତେ ପୁଣି ଦର୍ପଣରେ ନିଜକୁ ଦେଖିବାକୁ ପଡ଼ିବ, ଦେଖି ଖତେଇ ହୋଇ ଧୀରେ ଧୀରେ ପାଗଳ ହେବାକୁ ପଡ଼ିବ । ନା, ଠକେଇଲେ ଚଳିବ ନାହିଁ, ବିପଦ । ତେଣୁ ନିରଞ୍ଜନବାବୁ ଲଞ୍ଚ୍‌ବେଳେ ହାତରେ କାମ ନଥିଲାବେଳେ ସେମାନଙ୍କ ସଙ୍ଗରେ ବସି ଉଠିବାକୁ ନିଜକୁ ବାଧ କଲେ ।

ଦିନେ ସେମାନେ ରାଜମାତ ଚୁଡ଼ ବୁଲ୍ଲାରଟନାର ରସ ଉପଭୋଗ କରୁଥିଲେ । ବରଫର ମିରସତା ସରିଆସିଲା ବେଳକୁ ଷ୍ଟୋରସ୍ ବିଭାଗ ସତ୍ୟ ମୂର୍ତ୍ତି ବସେଇ ବସେଇ କହିଲେ—ନାମକରଣ ପ୍ରୋଜେକ୍ଟର କାର୍ଯ୍ୟଧାରା ତ୍ରୁଟି ହେଲା ନାହିଁ । ରାଜା ସାହେବ, ସେ କେଉଁ ପୂର୍ବତନ ନରେଶଙ୍କର ତୃତୀୟ ପୁତ୍ର, ନାକ ଫୁଲେଇ କହିଲେ—ତ୍ରୁଟି ହେଲା ? ଆକାଉଣ୍ଟସ୍ ବିଭାଗ ମାନୁ ମିଶ୍ର ଠୋଠୋ ହୋଇ ହସିଲେ, କହିଲେ—ଲଳିତା ? ପବ୍ଲିକ୍ ରିଲେସନ୍ ଇନ୍ଦର୍ ସିଂ ଓଠ ଗୋଲ କରି ପାଠ ମେଳେଇଲା ଭଳି କହିଲେ ନାହିଁ କୁହ ଲୋ-ଲି ତା, ଲୋ-ଲି ତା ! ନିରଞ୍ଜନ ବାବୁ ସମବେତ ହାସ୍ୟରୋଳରେ ଯୋଗ ଦେଲେ ଯଦିଓ ଏଇ ନାମକରଣ ମଜାକଥା ଅନେକ ଥର ଅନେକ ଭାବରେ ଶୁଣିବାକୁ ପଡ଼ିଲାଣି । ଗଳ୍ପର ସାରାଂଶ ହେଉଛି ଯେ ନୂଆ ଗାଲ ରଙ୍ଗେଇବା ପ୍ରୋଡ଼କ୍ଟର ନାଆଁ ଦେଶୀ ଦିଆଯିବ ବୋଲି

ସ୍ଥିର ହୋଇ ଅତ ମାମୁଲି ନାଆଁ ଲଳିତା ଦିଆଗଲା, କାହିଁକନା ମ୍ୟାନେଜଙ୍ଗ୍ ଡାଇରେକ୍ଟର ପସନ୍ଦ କଲେ, କହିଲେ—ତା'ର ବନାନ ହେବ ଲେଲିତା, ଜଣାଇବାକୁ ଗ୍ରହିଁଲେ ଯେ ସେ ମଧ ନବ୍ୟ, ସଭ୍ୟ, ଶିକ୍ଷିତ । ଯାହାହେଉ ଫମ୍ପା ହସ ହସିଲା ବେଳେ ନରଞ୍ଜନ ବାବୁଙ୍କ ଆଖିରେ ମ୍ୟାନେଜଙ୍ଗ୍ ଡାଇରେକ୍ଟର ରଘୁନାଥ ମଲ୍ଲିକ ବେଙ୍ଗ ଚେହେରା ସାଙ୍ଗକୁ ଭିନ୍ନ ଦୁଇଜଣଙ୍କର ଚେହେରା ଦିଶି-ଗଲା । ନାମକରଣ ପୁରସ୍କାର ବିଜେତାର ଦୟମାୟ କରିଣିଆ ଚେହେରା ଆଉ ତା'ର ସାନ ପାତଳୀ ସ୍ତ୍ରୀ··ମୁହଁରେ ଆନନ୍ଦ ଉତ୍ତର ଆସୁଥାଏ, ହେଲେ ଡରିଲା ପରି ଦିଶୁଥାଏ । ଡରକୁଳୀ ହରଣୀ, ନାଁ ମାଇଛେଳି ପରି । ନରଞ୍ଜନ ବାବୁ ମନେ ମନେ କୁରୁଳି ଖାଇଲେ । ପୁରସ୍କାର ପାଇ ସାରିଲା ପରେ ସ୍ୱାମୀ ନମସ୍କାର କରି କହିଥିଲା—ଆମ ଘରକୁ ଆସିବେ । ସ୍ତ୍ରୀ ଥରକରୁ ଅଧିକ ମୁଣ୍ଡ ଟୁଙ୍ଗାଇ କହି-ଥିଲା—ନିଶ୍ଚୟ ଆସିବେ । ଘର ଠିକଣା ବତେଇ ଦେଇଥିଲା । ଆଉ ତାକୁ ମୁଁ ମୋର ନୋଟ୍ ଖାତାରେ ଟିପି ନେଇଥିଲି ।

ଏ୬୬/୨୩ ଜଗତ୍‌ମୋହିନୀ ଲେନ୍ । ତିନଦିନ ପରେ ଯେଉଁଦିନ ଆକାଶ ମେଘରେ ଫାଟି ପଡ଼ୁଥିଲା ଆଉ ବର୍ଷା ତୁହାକୁ ତୁହା ଗ୍ଲଲିଥିଲା, ନରଞ୍ଜନ ବାବୁ ସେଇଠି ଅଧ ଘଣ୍ଟାଏ ବସି ଗ୍ର' ଖାଇ ଫେରିଲା ବେଳେ ମଧ ତାଙ୍କୁ ଜୋତା ହାତରେ ଧରି ପ୍ୟାଣ୍ଟକୁ ମୋଡ଼ି ଅଣ୍ଟୁଯାଏ ନେଇ ଡେଇଁ ଡେଇଁ ଗ୍ଲଲିବାକୁ ପଡ଼ିଲା । କିନ୍ତୁ ଦେଖିଲେ ମନେ ହେବ ତାଙ୍କୁ ମଜା ଲାଗୁଛି । ନରଞ୍ଜନ ବାବୁ ପିଲା ହେବାକୁ ବସିଛନ୍ତି ।

ପ୍ରକୃତରେ ତାହା ନୁହେଁ । ନରଞ୍ଜନ ବାବୁଙ୍କୁ ଜଗତ୍ ମୋହିନୀ ଲେନ୍‌ର ଦୁଃସାଧ ପାଣି କାଦୁଅ ମଜା ଲାଗୁନଥିଲା । ଡେଇଁ ଡେଇଁ ଗ୍ଲଲିବାର କାରସାଦି ତାଙ୍କୁ ପିଲା ହେବାକୁ ଡାକୁ ନଥିଲା । ତାଙ୍କ ମନ ପଛରେ ପଡ଼ିଥିଲା, ଆଖି ଓଠ ମୁହଁ ନିକଟ ସ୍ମୃତିକୁ ନେଇ ଚେଇଁ ଚହଟି ଉଠୁଥିଲା । ପାଣି କାଦୁଅ, ଧୂଳି ମାଟି ସହିତ କିଛି ସଂପର୍କ ନଥିଲା ।

ସେ ଗୋଟିଏ ନାଆଁକୁ ନେଇ କେତେଭଳି ଦରଫୁଟା ଅଫୁଟା ଉଚ୍ଚାରଣ କରି ଗ୍ଲଲିଥିଲେ । କ୍ଷଣକେ ବିସ୍ମିତ କ୍ଷଣକେ ଆମୋଦିତ ହେବାର ଗ୍ରହାଣୀ ଚଲା-ବାଟରେ—ଏପରିକି ହସୁଥିବା ପିଲମାନଙ୍କ ସମ୍ମୁଖରେ—ଢ଼ାଳି ଦେଉଥିଲେ । ଜଗତ୍ ମୋହିନୀ ! ଗଳିର ନାଆଁ ନୁହେଁ, ତାର ନାଆଁ । କେଉଁଠି ଲେଖା ହୋଇଛି ଯେ ଜଗତ୍ ମୋହିନୀ ପୁଷ୍ଟାପୁଷ୍ଟା ଗୌରବର୍ଣ୍ଣା ମାଆ ପରି ଦେଖା ଯାଉ-ଥିବେ ? ସୁନ୍ଦର—ଅସୁନ୍ଦର ଜନ୍ତୁଟି ପରି ଦେଖାଯିବେ ନାହିଁ କାହିଁକି ? ଅସୁନ୍ଦର

ହେଲେ କଅଣ ହେବ । ସେଇ ସାନ ପାତଳ ନେଉଳ ଦେହ, ଉଗଡଗର ଯଳଂଗ ସୁହାଣୀ, ମୁହେଇ ଦାନ୍ତର ଝଳ ଝଳ ହସ, ହସ ସରିଛି କି ନାହିଁ ମୋତେ ନାଅର କାନ୍ଦ୍ରାଗ୍ ପଣ । ସେଉଚି ଜନ୍ତୁ, ସେଉଚି ସୁନ୍ଦର । ଆଉ ସେଇ ହେଉଛି ଜଗତ୍-ମୋହନୀ । ମୁଁ କହୁଛି, ନରଞ୍ଜନ ବସୁ । ଏଭଳ ଗୋଟିଏ ପ୍ରାଣୀ ମୁଁ ଆଗରୁ ଦେଖି ନ ଥିଲି । ମୁଁ ଆସିଲି ଭଲ କରିଛି । ଏମିତ କେତେ ଲୋକଙ୍କ ନାଆଁ ଠିକଣା ନୋଟ୍ ବହିରେ ଲେଖା ହୋଇ ରହିଛି, ଶେଷକୁ ଯ୍ୱାର ପାଖକୁ ଆସିବାର ଥିଲି ! ଆସିଛି ଭଲ କରିଛି । ପ୍ରଥମେ ସେ କାବା ହୋଇଗଲା । ସେ କଣ ସ୍ୱପ୍ନରେ ସୁଦ୍ଧା ଭବଥିଲା ଯେ ନଜେ କମ୍ପାନୀର ସେଲ୍ସ ବାବୁ, ଯେ ତା' ହାତକୁ ପୁର-ସ୍କାର ଚେକ୍ ବଢ଼ାଇ ଦେଇଥିଲେ ସେ ସତରେ ତା'ର ଦୁଇ ବଖରିଆ ଘରକୁ ଆସିବେ ? କାହିଁକି ଆସିବେ ? ମୁଁ କହିଲି, କମ୍ପାନୀ ସମ୍ପର୍କ ରଖିବାକୁ ଚାହେଁ । ସମ୍ପର୍କଠୁ ଅଧିକ । ଧର ଏଇଠି ମୁଁ ମୋର ଚେହେରାକୁ ଇମେଜକୁ ମିଶେଇ ଦେବି । କ୍ଷତି କଅଣ ? ଏତେ ସାନ ସୁନ୍ଦର ଜନ୍ତୁଟିଏ, ମଣିଷ ଅସନା କେଉଁଠି ହେଲେ ଲଗିଲା ପରି ଦିଶୁନାହିଁ, ମୁଁ ଇଚ୍ଛା କଲେ ମାରି ପାରେ, ତାରି ପାରେ, ଭରି ଦେଇପାରେ- ଏଇଠି ନିଜକୁ ମିଶେଇ ଦେବି ନାହିଁ ତ ଆଉ କୋଉ ଗାତକୁ ଯିବି ?

ମୁଁ ଆସିବି, ପୁଣି ଥରେ ଆସିବି । ତା'ର ସେଇ ସ୍ୱାମୀଟା ସାଧାରଣ ମଣିଷ, ଭୁଚ୍ଛାକୁ ମଝିରେ କଥା କହୁଥାଏ । ଆରଥର ବେଳକୁ କ'ଣ ସେ ସେଇଠି ନଡ଼ବଡ଼ ହେଉଥିବ ?

ନରଞ୍ଜନ ବାବୁ ଦ୍ୱିତୀୟ ଥର ଗଲେ । ତୃତୀୟ ଥର ଗଲେ । କନ୍ତୁ ସବୁ ଥର ସେଇ ସ୍ୱାମୀ, ସାଧାରଣ ମଣିଷ, ସେଇଠି ନଡ଼ବଡ଼ ହେଉଥାଏ । ଯୋଡ଼ିଏ ବଖରାରୁ ଗୋଟିଏ ଦାଣ୍ଡଘର । ଟେବୁଲ, ଦୁଇଟି ଚଉକି ଆଉ ଫିତା ଖଟରେ ଘର ଭରି ଯାଇଛି । ନରଞ୍ଜନ ବାବୁ ଦେଖି ଖୁସି ହେଲେ ଯେ ତାଙ୍କ ଆସିବା ପରେ, ନିଶ୍ଚୟ ତାଙ୍କ ପାଇଁ, ଗୋଟିଏ କାଠ ଚଉକି ବଦଳରେ ଆଖି ଦୁରୁଣିଆ ବେତ ଚଉକି ଆସିଲାଣି । ପହଞ୍ଚିଲା କ୍ଷଣି ସେ ସେଇଠି ଲମ୍ବି ଯିବାକୁ ଚେଷ୍ଟା କରନ୍ତି । ଟେବୁଲ୍ ଉପରେ ଗୋଟିଏ ଚୀଇନା ଫୁଲଦାନୀରେ ପ୍ଲାଷ୍ଟିକ୍ ନାଲି ଗୋଲାପ ଥୁଆ ହେଲାଣି ନିଶ୍ଚୟ ତାଙ୍କ ପାଇଁ । ସେ ଆହୁରି ଖୁସି ହେଲେ । କନ୍ତୁ ସ୍ୱାମୀ-ବସ୍ତୁ ପ୍ରତି ବିତୃଷ୍ଣାକୁ ଦମନ କରି ପାରିଲେ ନାହିଁ । କାହିଁକି ବୋଲି ନିଜକୁ ପଚାରିଲେ । ସେ ଏଇ ଟ୍ରେଟିଆ ଘରେ ମୋ ମୁହଁ ସାମନାରେ ବସି ଜଳ ଜଳ ହୋଇ ଅନାଉଛି, ଜଗତ୍ ମୋହନୀକୁ ଆଡ଼ ଆଖି କରି ଭୁଲୁଛି, ଭୁଲୁଛି; ହେଲେ ସେଥିକୁ ଉପାୟ କଅଣ ? ସେ କୁଆଡ଼େ ଯିବ ? କାହିଁକି ଯିବ ?

ତା'ର କାରଣ ମୁଁ ଅତଥି ନୁହେଁ, ନିଜଲୋକ । ମୁଁ ଆସିଲେ ତା'ର ଏଇଠି ପଦଗ୍ଭରଣ କରିବା, ସ୍ତ୍ରୀ ଦେହକୁ ଲାଗି କରି ବସି ରହିବାର କୌଣସି ଅର୍ଥ ନାହିଁ । ଅଫିସରୁ ଫେରି ସଞ୍ଜବେଳେ ପରିବା ହାଟକୁ ଯିବା କଥା, ପୁଅ ପାଇଁ ଔଷଧ ଆଣିବାର କଥା (ରୋଗିଣା ପୁଅ ବୋଲି ଜଗତ୍‌ମୋହିନୀ କହୁଥିଲା । କ'ଣ ହୋଇଛି ତା'ର ?) ପଣିବାର ପାଇଁ ସେ ସବୁ କାମ ନକରି ଅତଥି ସତ୍‌କାର କରିବାକୁ କିଏ କହୁଛି ? ନିରଞ୍ଜନ ବାବୁ ସ୍ୱାମୀ ଭଦ୍ର ଲୋକଟିକୁ ଦିନେ ଏହି ମର୍ମରେ ଶୁଣାଇ ଦେବେ ବୋଲି ବିଗ୍ଭରିଲେ ଏବଂ ଭାବିଲେ ଏଥର ସଞ୍ଜରେ ନ ଆସି ଦିନ ବେଳେ ଆସିବ । କମ୍ପାନୀ ମୋତେ ସ୍ୱର୍ଗକୁ ନେବ ନାହିଁ ।

ଛନୋଟି ଦିନର ସାକ୍ଷାତ୍‌ରେ ସେ ଯାହା ସବୁ ଗପିଗଲା ତା'ର ପ୍ରଧାନ ପ୍ରଧାନ ଆଇଟେମ ସାରାଂଶ କ'ଣ ବୋଲି ପଗ୍ଭରିଲେ ସେ ହୁଏତ ଅଡମଡ ହେବେ । ପ୍ରଥମ କଥା ତା'ର ସାମାଜିକ ନାଆଁ କ'ଣ ବୋଲି ଆଜିଯାଏ ପଗ୍ଭରି ହେଲା ନାହିଁ । ମାଆର ଗୋଟିଏ ଝିଅ, ଗେହ୍ଲାଝିଅ; ମାଆର ନାଆଁ ଲଳିତା । ସେଇଲାଗି ସେ କମ୍ପାନୀର ନୂଆ ଗାଲ୍ ରଙ୍ଗ ପାଇଁ ସେଇ ନାଆଁ ବାଛିଲା, ଏତିକି ମନେଅଛି । ଆଉ ମନେଅଛି, ସେତିକିବେଳେ ଖିଆଲ ହେଲା ସେ ଜଗତ-ମୋହିନୀର ଗାଲରେ ସେଇ ରଙ୍ଗରୁ ଟିକିଏ ଲଗେଇ ଦେଲେ ସେ କେମିତି ଦେଖାଯିବ । କମିକ୍ ବହିରେ ଗୁଣ୍ଡୁଚ ମୂଷାର ଗାଲରେ ଲାଗିଥିବା ରଙ୍ଗ ଛୋପାକୁ ଅନୁମାନ କରି ହସ ଲାଗିଲା । ସେଇଠୁ ହଠାତ୍ ମନରେ ଆସିଲା, ଅତି ଅଦ୍ଭୁତ ଧାରଣା—ମୁଁ ଏଇ ନବରଙ୍ଗିଆ ଜନ୍ତୁଟିକୁ ଭଲପାଏ ।

ଅଦ୍ଭୁତ ଧାରଣା କେଉଁଠୁ ଆସିଲା ? ଗଲାଥର ନା ତା' ପୂର୍ବରୁ ? ନିରଞ୍ଜନ ବାବୁ ଠଉରେଇ ପାରିଲେ ନାହିଁ । ହେଲେ ସେ ସେଇ ଭାବରେ ଅନୁ-ଭୂତିକୁ ବାରମ୍ବାର ଡାକି ଛୁଡ଼ିଲେ ଓ ତାଙ୍କୁ ମଜା ଲାଗିଲା । ଭଲପାଏ ? ତା'ର ମାନେ କଅଣ ? ମୋର ଚନ୍ଦ୍ରା ଅଛି, ଇଚ୍ଛାକଲେ ଆଉ କେତେ ମିଳିବେ, ମୋର ଆଉ କିଛି କାମ ନ ଥିଲା—! ନିରଞ୍ଜନ ବାବୁ ଆଗନ୍ତୁକ ଅଦ୍‌ଭୁତକୁ ଚଡ଼େଇଲେ । ଚଡ଼େଇଲେ ଏବଂ ନିଜକୁ ଦର୍ପଣରେ ଦେଖିବାକୁ ଇଚ୍ଛା ହେଲା । ସତେକି ଏଥର ଦେଖିଲେ ଭଲ ଲାଗିବ । ଇମେଜ୍ ମୋତେ ଝଟେଇବ ନାହିଁ, ମୁଁ ତାକୁ ଖଟେଇବ ନାହିଁ...

ଯେତିକି ଦିନ ଗଡ଼ିଲା ତାଙ୍କୁ ଅଧିକତର ମଜା ଲାଗିଲା । ଖୁସି ଲାଗିଲା, ଅଥୟ ଲାଗିଲା ।

ସତରେ ? ସତରେ ? ଏଇଥର ଫଇସଲା ହୋଇଯିବ ? ଭଲ ପାଇଲେ କି ନପାଇଲେ ଯାଏ ଆସେ ନାହିଁ । ଅସଲ କଥା ହେଉଛି ମୋତେ ଲାଗୁଛି ଏଇଥର ମୁଁ ମିଶିଯିବ । ମିଶିଯିବ ଯଦି ଆଉ ବିଳମ୍ବ କାହିଁକି ? କେଉଁଥିପାଇଁ ଅପେକ୍ଷା କରୁଚ ?

ଶେଷକୁ ସେ ଦିନେ ଗୋଟିଏ ଆଷାଢ଼ ଉପର ବେଳାରେ ବାହାରିଲେ । ଅଫିସ ଛୁଟି ହେବାକୁ ଡେରିଅଛି । ଆଜି ସ୍ୱାମୀ ନ ଥିବ, କେହି ନ ଥିବେ, ଆଜି ମୁଁ ପୂର୍ଣ୍ଣ ଭାବରେ ତା' ସାଙ୍ଗରେ ନିଜକୁ ମିଶେଇ ଦେବ । ମିଶେଇ ଦେବ, ଲିଭେଇ ଦେବ, ନୂଆ ହୋଇଯିବ । ସେ ନିଜର ଖରନିଃଶ୍ୱାସକୁ ଅନୁଭବ କଲେ, ବୋଧହୁଏ ଓଠ ଦୁଇଟାଙ୍କର ଆତୁର ପଣକୁ ମଧ୍ୟ ଅନୁମାନ କରିପାରିଲେ ।

ଭଲ ପାଇଲେ କେତେ ଭଲ ନ ପାଇଲେ କେତେ—ସେ ବାଟଯାକ ଏଇ ପଦଟିକୁ ଗୁଣି ହେଲେ । ସତେକି ସେ ଆପଣା ବାହୁ ବଳରେ ଗଡ଼ ଜିଣିବାକୁ ଯାଉଛନ୍ତି, କାରଣ ବାନରମାନଙ୍କର ସାହାଯ୍ୟ ଲୋଡ଼ା ନାହିଁ ।

ସେ ଦୁଃଖିନୀ, ମୁଁ ତା'ର ଦୁଃଖ ହରିନେବ । ତା'ର ଦୁଃଖର ଉପାଦାନ କଅଣ ସେ ଜାଣିପାରି ନଥିଲେ । ତା'ର ପୁଅ ବେମାର ( କ'ଣ ହୋଇଛି ? ) ତା' ସ୍ୱାମୀର ଠିକଣା ଚାକିରି ନାହିଁ । କେଉଁ ବାଉଁଶ ଗୋଦାମରେ ସାମାନ୍ୟ ହିସାବପତ୍ର ଲେଖେ (ଯାହାହେଉ), ଘର ଛାତରୁ ପାଣି ଗଳୁଛି ( ବର୍ଷାଦିନ ) । ଯେତେକ କୁକୁଡ଼ା ଥିଲେ ସମସ୍ତେ ମରିଗଲେ (କୁକୁଡ଼ାମାନଙ୍କର ସେଇ ବଦଭ୍ୟାସ) ଇତ୍ୟାଦି ଦୁଃଖ କାହାଣୀ ଶୁଣିଲ ବେଳେ ସେ ଦୁଃଖର ସ୍ୱରୂପ ପରିମାପ ଜାଣିବା ପାଇଁ ଗ୍ରହ ନ ଥିଲେ । ଧରିନେଇଥିଲେ ଯେ ତଳ ମଧ୍ୟବିତ୍ତ ମାଇପି ଲୋକ, ତା'ର ଦୁଃଖ ଭୋଗିବା ଛଡ଼ା ଅନ୍ୟ ଗତି ନାହିଁ । ସେ କେବଳ ତା'ର ମୁହଁକୁ ଦେଖୁଥିଲେ । ଗୋଟିଆ ମୁହଁ, ଚେପ୍ଟା ନାକ ତଳେ ଲମ୍ବି ଯାଇଥିବା ଓଠ କଥା କହିଯାଉଛି, କାନ୍ଦ କାନ୍ଦ ହେଲାବେଳେ ଓଠ ବନ୍ଦୀ ହେଲାପରି ଅସହାୟ ଦେଖା ଯାଉଛି, ଆଖିପତା ସଦା ସର୍ବଦା ପଡ଼ୁଛି ଉଠୁଛି, କେତେବେଳେ ଡ଼ରିଲା ପରି ଆଉ କେତେବେଳେ ଡ଼ରିବ ନାହିଁ ଏଇ ସୁବିଧା ମିଳୁଛି କହିଦେବ, ଏମିତି ମନେ ହେଉଚ । ଦେଖୁ ଦେଖୁ ନିରଞ୍ଜନ ବାବୁଙ୍କର ଆହୁରି ଦେଖିବ ପାଖରେ ଦେଖିବ ବୋଲି ଇଚ୍ଛା ହେଉଥିଲା ।

ସେ କୌତୁକିଆ, ମୁଁ ତା'ର କୌତୁକରେ ଆଞ୍ଜୁଳା ଭରି ନେଇ ଚୂନା ଫୁଲ ପରି ମୋ ଉପରେ ତା' ଉପରେ ବର୍ଷିଦେବ । ତା'ର କୌତୁକରେ କେଉଁ-ଭଳି ସୁଖର ଉପାଦାନ ରହିଛି; ଏମାନଙ୍କ ସୁଖରେ କଅଣ ଥାଏ ତାଙ୍କର ଜାଣି-

ବାକୁ ଡର ନଥିଲା । କେବଳ ଦେଖୁଥିଲେ ସେ ହସିଲାବେଳେ କେମିତ ଉଚ୍ଛନ୍ନ ହେଲପର ମୋତେ ଧମାକର ମୁଁ ରହି ପାରୁ ନାହିଁ ବୋଲି ହସେ । ତା'ର ମୁହଁଗେଇ ଦାନ୍ତକୁ ବଛେଇ ଦେଇ ହସେ ।

ମୁଁ ତା'ର ସୁଖକୁ ନେବ, ଦୁଃଖକୁ ନେବ, ତା'ର ସବୁ ନେବ ।

ଘରପାଖ ହେଲା ବେଳକୁ ସେ କଳ୍ପନାରେ ଦେଖିଲେ ଯେ ସେ ଜଗତ୍‌ମୋହିନୀ ଉପରେ ଝାମ୍ପ ଦେଇଛନ୍ତି, ଆଉ ତାଙ୍କର ଇମେଜ୍ ଭାଙ୍ଗିଭୁର୍ଙ୍ଗି ମିଶି ମିଶି ଯାଉଛି ।

ପହଞ୍ଚି ଦେଖିଲେ ସୋର ଶବ୍ଦ ନାହିଁ । କାରଣ ଦାଣ୍ଡ କବାଟ ଆଉଜା ହୋଇଛି । କବାଟ ଖୋଲି ଉଙ୍କିମାରିଲେ, ଭିତରେ ପଶିଲେ । ଦାଣ୍ଡଘର ଖାଲି ପଡ଼ିଛି । ଚଉକି ଟିଭାଖଟ ଖାଲି ପଡ଼ିଛି । ସ୍ୱାମୀ ନାହିଁ ।

ସ୍ୱାମୀ ନାହିଁ ବୋଲି ମୁଁ ଜାଣିଛି । କାରଣ ସ୍ୱାମୀ ସାଙ୍ଗରେ ମୋର କାମ ନାହିଁ । ମୁଁ ଜଗତ୍‌ମୋହିନୀ ପାଖକୁ ଆସିଛି । ଏକା ଥରକେ ଏକା ବେଳକେ ଆସିଛି । ନିରଞ୍ଜନ ବାବୁ ଚଉକିରେ ବସିଲେ ନାହିଁ । ଆଜି ମୁଁ ଧାଇଁ ଧାଇଁ ଧସି ଯିବାକୁ ଆସିଛି । ସମୟ ନାହିଁ ।

ଜଗତମୋହିନୀ ନାହିଁ । ନିରଞ୍ଜନ ବାବୁ ପାଟିକରି ଡାକିବାକୁ ଚାହିଁଲେ ନାହିଁ । କାଳେ ନିଶ୍ୱାସର ଶବ୍ଦ ଗୁଡ଼ରେ ଶବ୍ଦ ଶୁଣାଯିବ ନାହିଁ, ଆବେଗ ଖସି ପଡ଼ିବ । ନିରଞ୍ଜନ ବାବୁ ଡାକିଲେ ନାହିଁ, କହିଲେ ନାହିଁ, ଆଗେଇଲେ । ମୁଁ ଦାଣ୍ଡଘରେ ବସିବି କାହିଁକି ? ମୁଁ କ'ଣ କୁଣିଆ ହୋଇଛି ? ଏଇ ପାଖ ଘର, ତା'ର ନିଜର ଗହନ ଗୋପନ ଘର, ମୁଁ ସେଇଠିକି ଯିବି । ସେଇଠି ସେ ଶୋଇ ଥିବ । ନିରଞ୍ଜନ ବାବୁ ଆଗେଇଲେ ।

ପରଦାକୁ ଆଡ଼େଇ ଦେଇ ଅନ୍ଧାରୁଆ ଘର ଭିତରେ ପଶିଗଲାବେଳକୁ ନିରଞ୍ଜନ ବାବୁଙ୍କର ମନେହେଲା ଏଠି ସମୟ ଅଟକିକି ରହି ଯାଇଛି । ଆଲୁଅ ପବନ କାମ ଛାଡ଼ି ବସି ଯାଇଛନ୍ତି । କାହିଁକିନା ମୁଁ ଏଠିକି ଆସିଛି ବୋଲି ବାହାର ପାରିବ ନାହିଁ । ସେ ମୋତେ ଛାଡ଼ିବ ନାହିଁ ।

ସେ ମୋ' ଆଡ଼କୁ ଚାହିଁ ରହିଛି, ହସୁଛି ।

ଗୁହିଁ ରହୁଛି···କିଏ ? ସେ ନୁହେଁ, ଜଗତମୋହିନୀ ନୁହେଁ । ଇଏ କିଏ ??

ଅଳ୍ପଅ ପବନ ଖେଳ ହୋଇ ଆସିଲଣି, ଆଉ ତା'ର ମୁହଁ ଚେହେରା ଦିଶି ଯାଉଛି । ମୁହଁ ଗ୍ଲେଟରୁ ବଡ଼ ହୋଇ ଆସୁଛି, ଏଡ଼େ ବଡ଼ । ଗଣ୍ଡି ଛୁଡ଼ି ଛୁଡ଼ି କାଠିଭଳି ଦେଖାଯାଉଛି । ଆଖି ଅନେଇଛି । ଏଇଟା କିଏ ?

ମଣିଷ ନୁହେଁ, ମଣିଷ ପିଲା । ଜଡ଼ ମାଦଳ ମଣିଷ ପିଲା ।···ଶେଷକୁ ଏଇ ପିଲା, ଏଇ ପିଲା ମୋତେ ଗୁହିଁ ହସୁଛି ?

ମୁଁ ଦୋଷୀ ନୁହେଁ, ପାଗଳ ନୁହେଁ । ମୁଁ ସାଧାରଣ ହାବୁହାଶ ନିରଞ୍ଜନ ବସୁ । ମୁଁ କାହାର କିଛି କରିନାହିଁ, ମୋ ଜୀବନରେ କିଛି ଘଟି ନାହିଁ । ମୋ ଦେହସାକ ଅସନା ଲଗିନାହିଁ, ମିଛ, ମିଛ, ମିଛ !!

ଜଗତ୍‌ମୋହିନୀର ଆଜନ୍ମ ଜଡ଼ମୂର୍ଖ ପୁଅ ପାଗଳକୁ ଚହ୍ନିଲ ନାହିଁ । କେବଳ ହସିବାକୁ ଲଗିଲା ।

ମୁଁ ତାର ହସ ଛଡ଼େଇ ଦେବ । ନିରଞ୍ଜନ ବାବୁ ଆଗେଇଲେ । ମୂର୍ଖ ବାଳକ ଆହୁରି ହସିଲା···

(ବି. ଦ୍ର. ଜଗତ୍‌ମୋହିନୀ ଓ ତା'ର ସ୍ୱାମୀ ଘର ବାହାରକୁ ଯାଇ ନ ଥିଲେ । ପୁଅର ଚେଇଁଲା ଆଖି ଆଗରେ ସେମାନେ କେବେହେଲେ ପାପ କାମ କରିନାହାନ୍ତି । ତେମ୍ବ,ଆଜି ମଧ୍ୟ ପାଗଯୋଗ ଦେଖି ଇଚ୍ଛା ହେଲରୁ ସେମାନେ ପଛପଟର ଚେନାଏ ଅଧାନ ଥାନରେ ପଶିଥିଲେ । ଶୋଇବା ଘରୁ ଜନମାନବର ହସକାନ୍ଦ ଚିତ୍କାର କିଛି ଶୁଭିଲ ନାହିଁ । ତେମ୍ବ , ତାଙ୍କ କାମ ନିର୍ବିଘ୍ନରେ ସମ୍ପନ୍ନ ହେଲ ।)



# ବଡ଼ ଅପା

ପିଲଟା କେତେ କାନ୍ଦୁଛି ମ ! କାନ୍ଦୁ, କାନ୍ଦୁ, ଯେତେକ ଜନ୍ମବିଷ ଓଟାଣ ହୋଇ ଆସୁ । ଲୁହ, ଲାଳ, ସିଙ୍ଘାଣି କିଛି ବାକୀ ରହିବ ନାହିଁ, ତାହାହେଲେ ଯାଇ ଶାନ୍ତ !

ଶାନ୍ତ କାହାର—ତା'ର ନା ତୋର ?

ଏକା କଥା । ସେ ଆଉ ମୁଁ ଭିନ୍ନ ନୁହେଁ । ଏଇ ବିଶ୍ୱାସ ମୂଳରୁ ଅଛି, ଯେଉଁଦିନଠାରୁ ମୁଁ ଘରଛଡ଼ା ସେବା କାମ କରିବାକୁ ଆସିଛି । କେହି କହିବ ନାହିଁ ଯେ ମୁଁ ବଡ଼ ଲୋକର ସ୍ତ୍ରୀ ହୋଇ ନାଆଁ କମେଇବାକୁ ଚାହେଁ । ତା' ହୋଇଥିଲେ ମୁଁ ଓ୍ୱାର୍ଡ଼ରେ ବୁଲି ରୋଗୀମାନଙ୍କ ଖଟ ମୁଣ୍ଡରେ ଫୁଲଟିଏ ଆପଲ୍‌ଟିଏ ଥୋଇ ଫେରି ଆସିଥାଆନ୍ତି, ମୋର ମୂଲ୍ୟବାନ ହସକୁ ଛିଞ୍ଚି ଛିଞ୍ଚି ପଳେଇ ଆସିଥାଆନ୍ତି । ରେଷ୍ଟ୍ ରୁମ୍‌ରେ ବସି ଡାକ୍ତରଙ୍କ ସାଙ୍ଗରେ ଚାହା ଖାଉଥାଆନ୍ତି । ଜନାନା ଓ୍ୱାର୍ଡର ଆବର୍ଜନାକୁ ଆବୁରି ପିଲାର କାନ୍ଦ ଶୁଣୁ ନ ଥାଆନ୍ତି ।

ସେ ଯଦି ମୋର ହୋଇ ନ ଥାଆନ୍ତା, ମୁଁ ତା' ପାଖକୁ ଯିବାକୁ ମନ କରନ୍ତି ନାହିଁ । କାହିଁକି ଯାଉଛ ? (ଆଜ୍ଞା, ସେ ବାଟେ ନୁହେଁ) ସେମାନେ ମୋତେ ସେ ବାଟେ ଯିବାକୁ ବାରଣ କରୁଛନ୍ତି, କାହିଁକିନା କେହି ଭଦ୍ରମହିଳା ସେ ଆଡ଼କୁ ଯିବାର ନୁହେଁ । ଭିତରେ ଭିତରକୁ ଯାହା ସବୁ ଅଛି, ପ୍ରସବର ପୂର୍ବାପର ରୋଗ, ଅନ୍ତରଙ୍ଗର ପଛକଥା, ରକ୍ତବୋଳା କନା, ଫୁଲି ଉଠିଥିବା ଶିରାଳ ଉଲଗ୍ନତା ଇତ୍ୟାଦି ମୋର ଦେଖିବାର ନୁହେଁ । ସତେକି ମୁଁ ମା' ହୋଇ ନଥିଲି ! ମୁଁ ନର୍ସିଂ ହୋମ୍‌ରେ ଛୁଆ ଜନ୍ମ କରିଥିଲି ବୋଲି ସେଠି ଯେମିତି ଅସନା ନଥିଲା···କାନ୍ଥ ଚଟାଣରେ ନଥିଲା ବୋଲି ଜଣେ ମୋର ଦେହରେ, ଘଟଣାର ଆରମ୍ଭରେ, ଶେଷରେ ନଥିଲା ? ସୁଲକ୍ଷଣା ଦେବୀ କାନ୍ଦୁରା ପିଲା ଆଡ଼କୁ, ଘନେଇ ଆସୁଥିବା ନାସ୍ତ-ନାରଖାର ଆଡ଼କୁ ଆଗେଇଗଲେ । ପାର୍ଶ୍ୱଚର ପୁଣି ଥରେ ଚେତାଇ ଦେବାକୁ ଭୁଲିଲା ନାହିଁ ଯେ ସେ ବାଟେ ଯିବାର ନୁହେଁ । ଭାବିଲି ଯେ ସୁଲକ୍ଷଣା ଦେବୀ ଖୋଜି ଲୋଡ଼ି ସେଠିକି ଯାଆନ୍ତି ଯେଉଁଠି ନାକରେ ରୁମାଲ ଦେବାକୁ

ପଡ଼େ, ଧ୍ୱନି ଅଣ୍ଟ ହୋଇ କାନରେ ଗଳି ଯାଏ ଓ ମସ୍ତିଷ୍କଗୁଡ଼ାକ ରୋଗାସୁର ହୋଇ ଭଲ ମସ୍ତିଷ୍କଙ୍କୁ ତଡ଼ନ୍ତି । ସେ ଏବେ ସେବତୀଗାଆଁ ଜିଲ୍ଲା ଡାକ୍ତରଖାନାକୁ ଆସିଛି, ହେଲେ ସୁଲକ୍ଷଣା ଦେବୀ କେଉଁ କସମର ଭି. ଆଇ. ପି. ତାକୁ ଅଜଣା ନୁହେଁ । ତା' ଛଡ଼ା ସେ ଲେଖାଲେଖି କରେ । ସେ ଗୃହେ ଦୃଶ୍ୟଗୁଡ଼ିକ ଫଟୋ ଉଠୁ । ମୁଁ ନାକରେ ରୁମାଲ ଚାପି ଦେଉଛି ପଛକେ ସୁଲକ୍ଷଣା ଦେବୀ ଆପଣା କାମ କରନ୍ତୁ । ଅଲକ୍ଷଣା କାନ୍ଦୁରାକୁ କୋଳକୁ ନିଅନ୍ତୁ ।

ସେବତୀଗାଆଁ ଡାକ୍ତରଖାନାର ଯୁବକର୍ମଚାରୀ ହରିଭୂଷଣ ନାଏକର ମନସ୍କାମନା ପୂର୍ଣ୍ଣ ହେଲା । ସୁଲକ୍ଷଣା ଦେବୀ ନଇଁପଡ଼ି କାନ୍ଦୁରାକୁ ନେଲେ । ସ୍ନେହବୋଳା ଆ' ବୋଲି କହି ହସ ହସ ବଦନରେ ତାକୁ କୁଣ୍ଢାଇ ଧରିଲେ ।

( ଚମତ୍କାର ! ହରିଭୂଷଣ ମନେ ମନେ ଟିପି ନେଲା । )

ସୁଲକ୍ଷଣା ଦେବୀ ତା'ର ଫୁଙ୍ଗୁଳା ଦେହରେ ହାତ ରଖିଲେ । ହାତ ବୁଲାଇଲେ । ଆଃ ! ଏଇ ହେଉଛି ମୋର ଯନ୍ତ୍ରଣା । ମହାନନ୍ଦ । ଏଇ କଳା ଖାସୁରୁ ଖାସୁରୁ ଦେହ, ଲୁହରେ ଲାଳ ମିଶି ଯାଇଛି, ବ୍ୟକ୍ତ ଅବ୍ୟକ୍ତ ରୋଗ ଗୁଡ଼ାଇ ହୋଇ ଯାଇଛି, ବେକ ତଳକୁ ଘାଆ, ଆଣ୍ଠିକାପେଟ ଭିତରେ କୀଟମାନେ କଲବଲ କରୁଛନ୍ତି, ମାଆ ପଶୁରୁ ନାହିଁ, ଏଇ ଦେହ ମୋର, ମୋ ପୁଅର ଦେହ•••

(ମେଘରେ ବିଜୁଳି । ଧ୍ୟାତ୍, ପୋଚରା ଉପମା, ଘୁଅ ଗୋବରରେ ସୁନା କଙ୍କଣ । ସୁନା ନଷ୍ଟ ହୋଇଯିବ ନା ମଇଳାରେ ସୁନା ଫଳିବ ?).

କ'ଣ ହୋଇଛିରେ ବାବୁ ? କିଏ ଦେଖିବ, ଫଟୋନେଇ କାଗଜରେ ଛାପିବ ବୋଲି ମୁଁ ଏକଥା କରୁ ନାହିଁ । ଏଇ ହେଉଛି ମୋ ଜୀବନର ସତ । ପ୍ରତିଦିନ ଥରେ ଦି'ଥର ଏମିତିଆ ଏଭଳି ଅନ୍ତରଙ୍ଗତା ନ ଆସିଲେ ମୁଁ ବଞ୍ଚିପାରନ୍ତି ନାହିଁ । ହଁ, ବଞ୍ଚି ରହିଲି, ବାହାଘର ପରେ କେତୁଟା ବର୍ଷ ଯେମିତି କଟିଗଲା, ମୋ ଜୀବନ ତାହାର କାମରେ ଆସିଲା ନାହିଁ ••

(ଇଏ ମେଇ ବାରିକାଣୀ ପୁଅ ନା ? ଯେ ବାହାନା କରି ଡାକ୍ତରଖାନାକୁ ଆସିଥିଲା, ଆଉ ତା' ପୁଅକୁ ଛାଡ଼ି ଦେଇ କେଉଁ ବଡ଼ବାଲା ପଠାଣ ସାଙ୍ଗରେ ପଳେଇଛି ? ବାପ ମାଆଙ୍କୁ ଖୋଜି ଆସିଥିଲା, ଏବେ ମଧ୍ୟ ଖୋଜୁଛି, ଝୁରି ପଜେଇ ଘୂରି ବୁଲୁଛି । କିନ୍ତୁ ଦେଖ, ବାପ ମାଆ ଛେଉଣ୍ଡକୁ କିଏ ରକ୍ଷା କରିବାକୁ ଆସିଛନ୍ତି ।

ସ୍ୱୟଂ ମାଆ ଠାକୁରାଣୀ ଯେ ସ୍ୱାମୀ ଦେବତାଙ୍କୁ ତ୍ୟାଗ କରି ଜନମାନବର ସେବା କରିବାକୁ ବାହାରିଛନ୍ତି ! କି ଶ୍ଳେଷ, ଆଇରନି ! ଗପ ଲେଖିଲେ ବଢ଼ିଆ ଜମିବ । )

ଟିକିଏ ଆଗରୁ ମୁହଁ ବିଚକଟିଆ କରୁଥିଲା, ଖାଉଥିଲା ଏଇଟା କିଏ । ଏଇକ୍ଷଣି ଦେଖ, ହସୁନାହିଁ ସିନା କାନ୍ଦ କମି ଆସିଲାଣି । କିଏ କହିବ ଯେ ମୋର ଏଇ ଭଲ ପାଇବା ସତ ନୁହେଁ ? ଯେ ଇଏ ହେଉଛି ଲୋକ ଦେଖାଣିଆ ଦୃଶ୍ୟ ? ନା କେଉଁ ପେଷାଦାରୀ ସେବକାର ଧର୍ମ ? ବିଧବା ଅଥବା ଶୁଖିଲା ମୁହଁର କ୍ଷତି ପୂରଣ ?

ଆରେ ପୁଅ ହସିଲାଣି ରେ । ରହ ଟୋକା, ମୋ ସିନ୍ଦୂରକୁ ଲେସି ଦେଏନା···

(ଏଇଥର ଡାକ ଆଣେ, ନ ହେଲେ ଆଣ୍ଟି-କ୍ଲାଇ-ମାକ୍ସ ହୋଇଯିବ । ପିଲାଟା ପୁଣି ଭେଁ କିନା କାନ୍ଦ ଉଠିବ, ବେଡ଼୍ ଉପରୁ କେଉଁ ମାତା ବାନ୍ତ କରି ସ୍ୱାଙ୍କ ଉପରେ ଛୁଟିକେଇବ କିମ୍ବା କିଛୁ ଗୋଟାଏ ଘଟିବ ।)

ପଛରୁ ଜୋତା ମଚ୍ ମଚ୍ ଶୁଭୁଛି । ଡାକ୍ତର ବାବୁ ? ହରିଭୂଷଣ ମୁହଁ ବୁଲେଇ ଅନେଇଲା । ଦେଖିଲା ବଡ଼ ଡାକ୍ତର, କିନ୍ତୁ ତାଙ୍କ ସାଙ୍ଗରେ ଆଉ ଜଣେ । ସ୍ୱାଙ୍କୁ ମଧ୍ୟ ସେ ଜାଣିଛି । ଅଭସ୍ତ୍ରା ଜିଲ୍ଲାର ଯୁବକ ସ୍ୱଦେଶୀ କଲେକ୍‌ଟର ମିଷ୍ଟର ଜ୍ୟୋତି ପ୍ରକାଶ । ସୁଲକ୍ଷଣା ଦେବୀଙ୍କର ପରମ ଭକ୍ତ ।

ସୁଲକ୍ଷଣା ଦେବୀ ଯେତେବେଳେ ହାଗବଦଲେଇ ସେମାନଙ୍କର ଅର୍ଥାତ୍ ଡାକ୍ତର ମହାପାତ୍ର ହରିଭୂଷଣ ନାଏକ ଏବଂ ଶ୍ରୀଯୁକ୍ତ ଜ୍ୟୋତି ପ୍ରକାଶ ତଥା ତାଙ୍କ ଚପରାଶିଙ୍କର ମୁହାଁମୁହିଁ ହେଲେ ଦୁଇ ପାଖରେ ଲୁହା ଖଟମାନଙ୍କରେ ଶୋଇଥିବା, ବସିଥିବା, କାନ୍ଦୁଥିବା, ଗଅଁ ଗଅଁ ହେଉଥିବା ରୋଗିଣୀମାନେ ତାଙ୍କର ଲୋକପରି ମନେ ହେଲେ । କାରଣ ତାଙ୍କର ସୌମ୍ୟ ବଦନ, ସାମାନ୍ୟ ହସ ଏବଂ ସଲଖ ଠାଣିରେ ଚ୍ୟାଲେଞ୍ଜ୍ ଥିଲା ପରି ଲାଗିଲା । ସତେକି ସେ ଯୁଗ ଯୁଗ ଧରି ଏମିତି ଠିଆ ହୋଇ ମୁକାବିଲା କରିବା ପାଇଁ ପ୍ରସ୍ତୁତ । ତୁମେମାନେ ମୋର ଅତୀତ । ଅତୀତ, ଅମଳିନ, ସାଦା ଶେତ ଶ୍ରେଣୀ ସମାଜ । ତୁମେମାନେ ମୋର ଅପର । ଏଇମାନେ ନିଜର ।

ଏଇମାନେ ନିଜର, ମୋ ଛାତିରେ ଯେଉଁ କାନ୍ଦୁରା ପିଲା, ଯାହାକୁ ମୁଁ ଜନ୍ମ କରି ଦେଇଛି, ଆଉ ଏଇ ରୋଗିଣୀ ଦୁଃଖିନୀ ଭଉଣୀମାନେ, ଏଇମାନଙ୍କର ସ୍ୱାମୀ

ପିଲା ପରିବାର···କିଏ କାନ୍ଦୁଛି କାନ୍ଦ, କନ୍ଧବଷ ଯେତେକ ଓଟାଣ ହୋଇ ଆସୁ ପରୁଆ ନାହିଁ । ମୁଁ ଅଛି ତୁମ ପାଖରେ ବସିତକ ଗୁଣି ନେବା । ଶାନ୍ତ ନ ଆସିଲେ ନାହିଁ ।

ସୁଲକ୍ଷଣା ଦେବୀଙ୍କର ମୁହଁରେ ଯେଉଁ ଦୀପ୍ତି ଫୁଟି ଉଠିଥିଲା ତାକୁ ଚହ୍ଲେଇ ଦେଲା ପରି ଭୋଦୁଅ ଆକାଶର ସୂର୍ଯ୍ୟ ସେବତୀଗାଆଁ ଡାକ୍ତରଖାନାର ଭଙ୍ଗା ଝରକା ଭିତର ଦେଇ ପଶି ଆସିଥିଲେ । ତାଙ୍କ ମୁହଁକୁ ଆଲୁଅରେ ଲେପି ଦେଇ ବାକୀତକ ଗୋଟିଏ ରୋଗିଣୀ ଗୁଡ଼ୀର ମୁଣ୍ଡପାଖ ଟେବୁଲରେ ଥୁଆ ହୋଇଥିବା ଔଷଧ ଶିଶି ଉପରେ ଗୁଡି ଦେଇଥିଲେ । ସତେକ ଦୁହିଁଙ୍କର ରଙ୍ଗ ଏବଂ ଉଦ୍ଦେଶ୍ୟ ସମାନ । ଉଗ୍ର ଅପ୍ରତିହତ ।

"ନମସ୍କାର । କ୍ଷମା କରିବେ, ମୁଁ ଆପଣଙ୍କୁ କଷ୍ଟ ଦେବାକୁ ଆସିଲି । ଡାକ-ବଙ୍ଗଳାକୁ ଯାଇଥିଲି, ସେଠି ଆପଣଙ୍କୁ ନ ପାଇ ଅନାଥାଶ୍ରମକୁ ଗଲି, ସେମାନେ କହିଲେ ଆଜି ଆପଣ ଡାକ୍ତରଖାନାକୁ ଆସି ପାରନ୍ତି—"

କଲେକ୍ଟରଙ୍କ ମୁଖବନ୍ଧକୁ ଗୋଟେଇ ନେଇ ଡାକ୍ତର ବାବୁ ଆରମ୍ଭ କଲେ—

"ମୁଁ ପ୍ରକାଶ ସାହେବଙ୍କୁ କହିଲି, କହିଲି ଯେ ସେବତୀ ଗାଆଁରେ ଆପଣଙ୍କ ପ୍ରୋଗ୍ରାମ ଆହୁରି ଦୁଇ ଦିନ, ଅନାଥାଶ୍ରମ ଶିଶୁସଦନ ଛଡ଼ା ଟେକ୍ସଟାଇଲ୍ ମିଲ୍‌ବାଲା ଆପଣଙ୍କୁ ଡାକିଛନ୍ତି ବୋଲି ଆମ କଲେକ୍ଟର କହୁଥିଲେ"—

ସୁଲକ୍ଷଣା ଦେବୀଙ୍କର ସୂକ୍ଷ୍ମ ହସ ଥରେ ଉଠିଲା ପରି ମନେ ହେଲା । ତୁମ କଲେକ୍ଟର, ଆମ କଲେକ୍ଟର, ପ୍ରୋଗ୍ରାମ, କେହି ମୋତେ ରୋକି ପାରିବେ ନାହିଁ । ମୋର ଆତ୍ମା ଯେଉଁଠିକି ଡାକିବ ମୁଁ ସେଇଠିକି ଯିବି । କିନ୍ତୁ ଏଇ ପ୍ରକାଶ ସାହେବ ପୁଣି କୁଆଡ଼ୁ ଆସି ପହଞ୍ଚିଗଲେ ? ମାସକ ତଳେ ସେ ମୋତେ କେଉଁ ବାର୍ଷିକ ଉତ୍ସବକୁ ନେଇଯିବା ପାଇଁ ଆସିଥିଲେ, ଆଉ ମୁଁ ଗଲି ନାହିଁ ପରା ?

କିନ୍ତୁ ଶ୍ରୀଯୁକ୍ତ ଜ୍ୟୋତିପ୍ରକାଶ ଆଶାନ୍ୱିତ ହେଲେ । ତାଙ୍କର ମନେ ପଡ଼ିଲା ଯେ ମିସେସ୍ ଚୌଧୁରୀ ପୂର୍ବଥର ମଧ୍ୟ ଅନୁରୂପ ମୁଦ୍ରାରେ ହସୁଥିଲେ । ମାନେ ଯେଉଁଥର ସେ ଅନୁରୋଧ ରକ୍ଷା କରି ମୋ ସାଙ୍ଗରେ ଆସିଲେ । ଆସିବେ । କ୍ରମଶଃ ବୁଝିବେ ଯେ ମୁଁ ଅନ୍ୟମାନଙ୍କ ପରି ନୁହେଁ । ସେ ଡାକ୍ତରବାବୁଙ୍କ ସଫେଇକୁ କାଟି ଦେଇ ବକ୍ତବ୍ୟ ଶେଷ କଲେ ।

"ମୋତେ ମୋତିପୁର ଜନତା ପଠେଇଛନ୍ତି । ସେଠି ମଳିକ ଓ ଚଷା-ମାନଙ୍କ ଭିତରେ ମହା ଗଣ୍ଡଗୋଳ ଲାଗିଛି, ପିଲା ବଡ଼ଙ୍କୁ ମିଶେଇ ଛଅଜଣ ମଲେଣି, ସାତଜଣ ଡାକ୍ତରଖାନାରେ ମରମର ହେଉଛନ୍ତି, ଗାଆଁ ଗଣ୍ଡା ଛାରଖାର ହୋଇ ଗଲାଣି । ଆପଣ ନ ଆସିଲେ ଚଳିବ ନାହିଁ ।"

ସୁଲକ୍ଷଣା ଦେବୀଙ୍କର ମୁହଁ ଗମ୍ଭୀର ହୋଇଗଲା । ବିସ୍ମୟ, କ୍ରୋଧ ଏବଂ ଉତ୍ତେଜନା ଛନ୍ଦାଛନ୍ଦ ହୋଇ ତାଙ୍କୁ କାବୁ କରିବାକୁ ବସିଲେ, ତାଙ୍କର ଭାବ-ସ୍ଫୁରଣକୁ ବାଟ ଛାଡ଼ିଲେ ନାହିଁ । ମୋତିପୁର ! ମୁଁ ସେଠିକି କାହିଁକି ଯିବି ? କାହିଁକି ନ ଯିବି ? ସେଠି କିଏ କେବଳ ସେଇ ଅଛି ? ମୋର ଦୁଃଖୀରଙ୍କି ରୋଗୀ-ବଇରାଗୀ ନାହାନ୍ତି ? ଗଲେ ଯିବି, କିଏ ମୋତେ ମନା କରିବ ?

ସୁଲକ୍ଷଣା ଦେବୀଙ୍କର ଏକମାତ୍ର ସନ୍ତାନ ପ୍ରିୟବ୍ରତ ଚୌଧୁରୀ ମୋତିପୁର ଇଞ୍ଜିନିୟରିଙ୍ଗ୍ କଲେଜର ଛାତ୍ର । ହଷ୍ଟେଲରେ ଥାଏ ।

"ଚାଲନ୍ତୁ କଥାବାର୍ତ୍ତା ହେବା" କହି ସୁଲକ୍ଷଣା ଦେବୀ ଅଗ୍ରସର ହେଲେ । ଅନ୍ୟମାନେ ଗହଣରେ ଚାଲିଲେ । ଜ୍ୟୋତିପ୍ରକାଶ ସୁଲକ୍ଷଣାଙ୍କର ବାମ ମଣିବନ୍ଧରେ ବନ୍ଧା ହୋଇଥିବା ଘଡ଼ି ଓ ସଂଲଗ୍ନ ଝାଲୁଆ ଖରସିଆ ଗୋଟା ଚମକୁ ନେଇ କିଛି ଭାବିଲା ପରି ହେଲେ ଓ କହିଲେ, "ଆପଣ ଟିକିଏ ବିଶ୍ରାମ ନିଅନ୍ତୁ, ତା'ପରେ ।" ସୁଲକ୍ଷଣା ଦେବୀ ଉତ୍ତର ଦେଲେ ନାହିଁ ।

କଥାବାର୍ତ୍ତା ବିଶେଷ କିଛି ହେଲା ପରି ମନେ ହେଲା ନାହିଁ । କାରଣ ଅଳ୍ପ ସମୟ ମଧ୍ୟରେ ସୁଲକ୍ଷଣା ଦେବୀ ସେବତିଗାଆଁ ଜିଲ୍ଲା ଡାକ୍ତରଖାନାର ଅଧ୍ୟକ୍ଷ, ଡାକ୍ତରଗଣ ଏବଂ ହରିଭୂଷଣ ନାଏକ ସମେତ ସମସ୍ତ ନର୍ସ କର୍ମଚାରୀମାନଙ୍କ ଉଦ୍ଦେଶ୍ୟରେ ଦୁଇହାତ ଯୋଡ଼ି ବିଦାୟ ନେଲେ । ଓଠର ହସ କୁଞ୍ଚିତ କପାଳ ସାଙ୍ଗକୁ ମାନୁ ନ ଥିଲା । ଓଠର ହସ ନାଲିଟିଆ ଧଳା ମାର୍ବଲରେ ଖୋଳା ହେଲା ପରି ଦିଶୁଥିଲା । ସେଇଠୁ ସେ ଶ୍ରୀଯୁକ୍ତ ଜ୍ୟୋତିପ୍ରକାଶଙ୍କର ଆସ୍‌ମାନୀ ଫିଆଟ୍ ଗାଡ଼ିରେ ବସି ଅନ୍ୟ କେଉଁ ଦେଶକୁ ଗଲେ ।

ହରିଭୂଷଣ ନାଏକର ମୁହଁରେ ମୁରୁକିହସର ଚହଲବର୍ତ୍ତି ନଥିଲା । ତା' ପାଟିରୁ ବାହାରି ଆସୁଥିଲା—ଆଜ୍ଞା, ସେ ପିଲା ପୁଣି କାନ୍ଦିଲାଣି !

ଅଫିସକୁ ଫେରିଆସି ଔଷଧ ହିସାବ ଖାତା ଧରିବା ପୂର୍ବରୁ ସେ ଗୁଣୁ ଗୁଣୁ ହୋଇ କହୁଥିଲା, ସମସ୍ତେ ଶୁଣିଥିବେ, "ସାଧାରଣ ଲୋକ ନୁହେଁ, ଖୋଦ୍

ଆଇ. ଏ. ଏସ୍. ଅଫିସର... ।" ସହକର୍ମୀ ରଘୁନାଥ ଯୋଗଦେଲା, କହିଲା, "ଦେଖିଲ ତ ? ଦେଶୀ ଲୋକ ଗଢ଼େଇଲେ । ପ୍ରୋଗ୍ରାମ୍ ହେଲା ଏଠି ଉଦ୍ୟାନ ରହିବେ, ଶିଶୁମାନଙ୍କୁ କ୍ଷୀର ଦେବେ, ଅନାଥମାନଙ୍କୁ ଉଦ୍ଧାର କରିବେ ଇତ୍ୟାଦି, କିନ୍ତୁ ବିଦେଶୀ ଚମଡ଼ା ଏମିତି ହମ ହମ ବାସିଲା ଯେ ଦେବୀ ଦୁଇ ମିନିଟ୍‌ରେ ସବୁ ଛୁଡ଼ିଛୁଡ଼ି ତା' ସାଙ୍ଗରେ ବସି ପଳେଇଲେ । ଦେଖିଲ ? ମତଲବ କଣ ବୁଝିଲ ?"

"ଥାଉ, ସେତକ ଥାଉ । ତମେ ତାଙ୍କ ବିଷୟରେ କଣ ଜାଣିଛ କହିଲ ?" ହରଭୂଷଣ ଚିହିଁକ ଉଠିଲା ।

ହରଭୂଷଣର ଏଭଳି ପ୍ରତକ୍ରିୟାରେ ସେମାନେ ବିସ୍ମିତ ହେବାର କଥା । ପ୍ରଥମେ ସେଇ ଆରମ୍ଭ କଲା, ଅଥଚ ସେମାନେ ମୁହଁ ଚୁହାଁଚୁହିଁ ହେଲେ । କିନ୍ତୁ ହରଭୂଷଣ କହୁଥିବା କଥାକୁ ମନେ ମନେ ପଢେଇଲା ଏବଂ ଗର୍ବ ଅନୁଭବ କଲା । ତମେ ତାଙ୍କ ବିଷୟରେ କଣ ଜାଣିଛ ? ମୋତେ ପଚାର, ମୁଁ କହିବି । ମୁଁ ତାଙ୍କୁ ମୋର ଜୀବନ ଯାକ ଜାଣେ । ସାତ ଆଠ ବର୍ଷର ହୋଇଥିଲି ମାଆ ମୋତେ ଚହ୍ନେଇ ଦେଇଥିଲା, ସେ ଯେତେବେଳେ ମୁଣ୍ଡରେ ଓଢ଼ଣା ନଦେଇ ରିକ୍‌ସାରେ ବସି କୁଆଡ଼େ ବାହାରିଥିଲେ । ଆମର କାଦୁଅ ପଚପଚ ଗଳିରେ ଛପର ଭିତରୁ ଖେଙ୍କାର ହୋଇ ଆସିଥିବା ବାଉଁଶ ଆଉ ନେଳି ଭୁଟୁ ଭୁଟୁ ନର୍ଦ୍ଦମାକୁ ବାଟ କାଟି ଯାଉଥିଲେ, ସିଧା ହୋଇ ଆମ ସମସ୍ତଙ୍କୁ ଅନେଇ ହସି ନ ହସିଲା ପରି ଦିଶୁଥିଲେ, ଦାଉ ଦାଉ ହୋଇ ଜଳୁଥିଲେ ଦେବୀଙ୍କ ପରି । ମାଆ ଚହ୍ନେଇ ଦେଲା, ମୋତେ ନୁହେଁ ଅନ୍ୟମାନଙ୍କୁ, ହେଲେ ମୁଁ କାନ ଡେରି କରି ଶୁଣିଲି । କହିଲା, ଦେଖ ମୁକୁନ୍ଦ ଚୌଧୁରୀଙ୍କ ବୋହୂ, ମୁଁ କହୁଛି ଯାହା । ବିଧୁ ଚୌଧୁରୀ ଭାରିଜା, ତା' ପୁଅ ଆମ ହରି ସାଙ୍ଗର ହେବ । ସେଘର ବୋହୂ ପୁଣି ଏମିତି ରାସ୍ତା ଘାଟରେ ଚେହେରା ଦେଖାଇ ବୁଲିବ କିଏ ଭାବିଥିଲା ?...ସେତିକି ବେଳଠୁଁ ମୁଁ ଦେଖିଛି, ଜାଣିଛି, ମନେ ମନେ ହିଁପି ରଖିଛି । ସେଇ ନିଦଭଙ୍ଗା ଚେହେରା, ଖଣ୍ଡାଧାର ନାକ, ନିର୍ମଳ ଗ୍ରହାଣୀ, ଇଏ କେମିତି କାହାର ମାଆ ହେବେ ମ—ଧ୍ୟାତ୍ତ !

ବଡ଼ ହେଲାରୁ ତାଙ୍କ ଗୁଣଗ୍ରାମ ଜାଣିଲି, ରାମାୟଣ ଶୁଣିଲି । ବଡ଼ଲୋକ ବିଧୁ ଚୌଧୁରୀଙ୍କ ଭାରିଜା, ପୁଅ ମୋର ସାଙ୍ଗର ହେବ । ପୁଅ ଘରଭିତରେ ପଛରେ ପକେଇ ଜନସେବା କରୁଛି, ନାଁ କମଉଛି, ଡାକ୍ତରଖାନା ଜେଲଖାନା ପାଇଖାନା ସବୁଠି ପଶିଯାଇ ଦୁଃଖୀମାନଙ୍କୁ ଧନ୍ୟ କରୁଛି । ସବୁ ଶୁଣିଲି । ଘର କନିଆଁ କେବେଠୁଁ କେଉଁଆଡ଼େ ଯିବ ଦେଖିବା ବୋଲି ଅପେକ୍ଷା କଲି । ଆମ ରତନ-

ଗଡ଼ ସଦର ଡାକ୍ତରଖାନାରେ ଗୃହକର୍ତ୍ତ୍ରୀ ଜୁଟିଲା ପରେ ଭି. ଆଇ. ପି ଙ୍କୁ ପାଖରେ ଦେଖିଲି । ସେଠୁ ବଦଳି ହୋଇ ଆସି ଆଜି ଏଇ ସେବତୀଗାଆଁ ଡାକ୍ତରଖାନାରେ ଆହ୍ଣତ ପାଖରେ···ଦୃଶ୍ୟ ଦେଖିଲି । ମନେ ରହିଲା । ତାକୁ ନେଇ ଦିନେ ଗପ ଲେଖିବ । ଅବଶ୍ୟ ଲେଖିବ ।

ହେଲେ ଏଇ ବାହାର ଲୋକଗୁଡ଼ାକ ତାଙ୍କ ବିଷୟରେ ଏଣ୍ଡୁ ତେଣ୍ଡୁ କହିବେ କାହିଁକି ? କେଉଁ ସାହାସରେ ?

ସେବତୀ ଗାଁ ଛାଡ଼ିବା ପୂର୍ବରୁ ଜ୍ୟୋତିପ୍ରକାଶ ପୁଣି ଥରେ ବିଶ୍ରାମ ନେବା ପାଇଁ ପ୍ରସ୍ତାବ କରିଥିଲେ । କହିଲେ, ଦେଢ଼ଶହ ମାଇଲ୍ ବାଟ, ଯେମିତି ହେଲେ ଅଭସ୍ଥା ନଈ ପୋଲ ପାଖରେ ପହଞ୍ଚିଲା ବେଳକୁ ସଞ୍ଜ ହୋଇ ଯାଇଥିବ, କାଲି ସକାଳ ପୂର୍ବରୁ କିଛି କାମ କରି ହେବ ନାହିଁ, ତେଣୁ ଡାକବଙ୍ଗଳାରେ ଗାଧୋଇ ପାଧୋଇ ଲଞ୍ଚ୍ ଖାଇ ଆରାମ କରି ବାହାରିଲେ ବୋଧହୁଏ ଭଲ ହୁଅନ୍ତା । ଏଥର ସେ ସୁଲକ୍ଷଣାଙ୍କର ମଣିବନ୍ଧକୁ ଦେଖୁ ନଥିଲେ, ତାଙ୍କର ଦେହ ଲଗା ଶାଢ଼ୀରୁ ଯେଉଁ ବାସ୍ନା ଆସୁଥିଲା, ଡାକ୍ତରଖାନାର ଔଷଧ ଆଣ୍ଟିସେପ୍‌ଟିକ୍‌ର ବାସ୍ନା ପରି ମନେ ହେଉଥିଲା, ତାକୁ ବଦଳେଇ ଦିଅନ୍ତୁ, ନିଜ ଦେହ ଗନ୍ଧ ଫେରି ଆସୁ ବୋଲି ଚାହୁଁଥିଲେ । ପ୍ରକୃତ ପକ୍ଷେ ସୁଲକ୍ଷଣା ଦେବୀଙ୍କର ମନରେ ସ୍ନାନ କରି ଶୁଚି ହେବାର ପ୍ରବୃତ୍ତି ଆସିବାର କଥା । କାରଣ ସେ ଏବେ ମଧ୍ୟ ସେଇ ରୁଗଣକୁଷ୍ଠିତ ସାନ ଦେହର ସ୍ପର୍ଶ ଅନୁଭବ କରି ପାରୁଥିଲେ । ତା'ର ତୀବ୍ର ଜ୍ୱାଳା ତଥାପି ଧକ୍ ଧକ୍ କରୁଛି···ଅଛି । ଅଛି, ଥାଉ, ସ୍ନାନ କରିବାର ସମୟ ଆସି ନାହିଁ ବୋଲି ସେ ନିଜକୁ ଚେତାଇ ଦେଲେ । ଜ୍ୟୋତିପ୍ରକାଶଙ୍କ ଅନୁରୋଧକୁ ନାପସନ୍ଦ କରି ମୁଣ୍ଡ ହଲାଇଲେ ।

ଅଗତ୍ୟା ଜ୍ୟୋତିପ୍ରକାଶ ଡାକବଙ୍ଗଳାରୁ ସୁଲକ୍ଷଣା ଦେବୀଙ୍କର ସୁଟ୍‌କେଶ୍ ଆଦି ଅଣାଇ ମୋତିପୁର ଅଭିମୁଖେ ପ୍ରସ୍ଥାନ କଲେ । ଡ୍ରାଇଭର ଚପରାଶିଙ୍କ ଅସ୍ଫୁଟ ଆପତ୍ତିକୁ ଶୁଣିଲେ ନାହିଁ । ମିସେସ ଚୌଧୁରୀଙ୍କ ସାଙ୍ଗରେ—ସେ ସୁଲକ୍ଷଣା ଦେବୀଙ୍କୁ ମିସେସ୍ ଚୌଧୁରୀ ବୋଲି ସମ୍ବୋଧନ କରିବାକୁ ଉଚିତ ମନେ କରନ୍ତି—କେଉଁ ବିଷୟ ନେଇ ଆଲୋଚନା କଲେ ଭଲ ହେବ ବୋଲି ବିଚାର କଲେ । ଉପସ୍ଥିତ ସମସ୍ୟାକୁ ନେଇ ତାଙ୍କୁ ବିବ୍ରତ କରିବା ଅନ୍ୟାୟ ହେବ । ବରଂ ଆସନ୍ନ ସମସ୍ୟାରୁ କିଛି ନେଲେ···ମରୁଡ଼ି ? ବନ୍ୟା ? ବାତ୍ୟା ? ଏଇ ହତଭାଗା ଲର୍ଡ଼ ଜଗନ୍ନାଥଙ୍କ ଦେଶରେ ଠନକ ଠନହେଁ ଗୋଟିଏ ବର୍ଷରେ ଏକାଠି ଆସିବା ବିଚିତ୍ର

ନୁହେଁ । ନା ତାଙ୍କର ବ୍ୟକ୍ତିଗତ ହାଲଚାଲ ପରିଚୟ ? ପରିଚୟ ଯେ କ'ଣ ପରିଚୟ ?

ମିସେସ୍‌ଚୌଧୁରୀଙ୍କର ସ୍ୱାମୀ କିଏ ? ଅହଲ୍ୟା ଦେବୀ, ଝାନ୍ସୀ ରାଣୀ, ସରୋଜିନୀ ନାଇଡୁଙ୍କର ସ୍ୱାମୀ କିଏ ଥିଲେ କାହାର ମନେ ଅଛି ?

ଜ୍ୟୋତିପ୍ରକାଶ ସୁଲକ୍ଷଣାଙ୍କର ସ୍ଥିର ନୀରବ ପ୍ରତିମୂର୍ତ୍ତିକୁ ଚାହିଁଲେ, କ୍ଷଣକ ପାଇଁ ଅଳଜକ ଚାହାଣୀରେ ଚାହିଁଲେ ଓ ଦୃଢ଼ଭଙ୍ଗୀରେ ମନେ ମନେ କହିଲେ—ମୁଁ ଆପଣଙ୍କୁ ଖୋସାମତ କରୁନାହିଁ । ଆପଣ ସାଧାରଣ ସ୍ତ୍ରୀ ନୁହଁନ୍ତି । ପୂର୍ଣ୍ଣଚ୍ଛେଦ ।

ମୁଁ ଆପଣଙ୍କର ଦେଶର ନୁହେଁ, ଜାତିର ନୁହେଁ । ମୋର ମାତୃଭାଷା ଭିନ୍ନ । ତା'ବୋଲି ମୁଁ କଣ ଆପଣଙ୍କୁ ଚହ୍ନେ ନାହିଁ ।

ଅଜାଣତରେ ଜ୍ୟୋତିପ୍ରକାଶ ସୁଲକ୍ଷଣାଙ୍କର ପାଖକୁ ଲାଗି ଆସିଲେ । ତାଙ୍କର ମନେ ହେଲା ଯେ ମାତୃଭାଷା ଅକ୍ଷର ଓ ଧ୍ୱନିରେ ତିଆରି ହୋଇ ନାହିଁ । ଆମର ଭାଷା ହେଉଛି ଅଙ୍ଗପ୍ରତ୍ୟଙ୍ଗ ଭାବଭଙ୍ଗୀର ରେଖା, ଫୁରୁ ଫୁରୁ କେଶ ବସନ ବାୟୁର ବିନ୍ୟାସ···

(ମିସେସ୍‌ଚୌଧୁରୀଙ୍କର କଣ ହୋଇଛି ? ସେ ଅଳ୍ପକଥା କୁହନ୍ତି । କିନ୍ତୁ ମୁଁ ତାଙ୍କୁ ଏତେ ସମୟ ଏମିତି ଚୁପ୍ ହୋଇ ବସି ରହିବାର ଆଗରୁ କେବେ ଦେଖି ନ ଥିଲି । ଜ୍ୟୋତିପ୍ରକାଶ ବିସ୍ମିତ ହେଲେ ତେବେ ବିସ୍ମୟରୁ ନିଜକୁ ଘୁଞ୍ଚେଇ ନେଲେ । ସଚେତକ ସୀମା ଟପିବାର ନୁହେଁ···ମାଆର ଅଗମ୍ୟ ଅଦୃଶ୍ୟ ଅଂଶର ନିଷେଧ ।)

ମୋର ଦୀର୍ଘ ଚାକିରୀ ଜୀବନ ଏଇ ଦେଶରେ କଟିବ, ଏଇ ବିରାଟ ମଫସଲ ଦେଶର ବଡ଼ପାଟିଆ ଗରିବ ଗାଉଁଲିମାନଙ୍କୁ ନେଇ ଗୋଲଗୋଲ ଅକ୍ଷର ଗୋଲ ଗୋଲ ଶବ୍ଦର ଗଡ଼ ଗଡ଼ ପେଣ୍ଡୁମାନଙ୍କ ସାଙ୍ଗରେ ଲଢ଼େଇ କରି ହଳଦୀ ଗୋରୀ ଝିଅମାନଙ୍କର ସୁନ୍ଦର ଗୋଲ ମୁହଁକୁ ମନେ ପକାଇ, ଝାଳ, ପୋଛି କାମ କରି···ମୁଁ ଏମାନଙ୍କୁ ଭଲ ପାଏ ନାହିଁ ବୋଲି କିଏ କହିବ ? କିନ୍ତୁ ଭଲ ପାଇବା ଯଥେଷ୍ଟ ନୁହେଁ । ମିସେସ୍ ଚୌଧୁରୀଙ୍କ ପରି ଜଣେ, ଯେ ନାରୀ ହେଲେ ମଧ୍ୟ ନରମ ଲୁଟୁପୁଟୁ ନୁହଁନ୍ତି, ଯାହାଙ୍କୁ ଭଲ ପାଇବାର ଅସ୍ପର୍ଦ୍ଧା କରି ହେବ ନାହିଁ ଅଥଚ ମୁଣ୍ଡ ନୁଆଇଁବାକୁ ଲାଜ ମାଡ଼ିବ, ଯାହାଙ୍କୁ ଦେଖିଲେ କିଛି ପାଇଲା ପରି ମନେ ହୁଏ, ଏଭଳି କେହି ଜଣେ ମୋର କର୍ମଜୀବନରେ ଆସି ନ ଥିଲେ ଜ୍ୟୋତି-

ପ୍ରକାଶ ଆଇ. ଏ. ଏସ୍. ଦାନାପାଣିଖିଆ ସୁଦକ୍ଷ ଅଫିସର୍ ହୋଇ ରହି ଯାଇଥାନ୍ତା, ନିଜକୁ ଏ ଦେଶର ପୁଅ ବୋଲି ମଣନ୍ତା ନାହିଁ ।

ମିସେସ୍ ଚୌଧୁରି କଳ୍ପନା କରି ପାରିବେ ନାହିଁ ଯେ ଆବଶ୍ୟକ ହେଲେ ମୁଁ ଏଇ ଦେଶର ମଙ୍ଗଳ ପାଇଁ ନିଜକୁ ବଳି ଦେଇ ପାରେ…

(ମିସେସ୍ ଚୌଧୁରୀଙ୍କର କଣ ହୋଇଛି ?)

ଶେଷକୁ ଜ୍ୟୋତିପ୍ରକାଶ ରାସ୍ତା କଡ଼ରେ ଧାଇଁ ପଳାଉଥିବା ଗଛବୃରୁଛ ନଇ ନାଳକୁ ଦେଖିଲେ । ଦେଖୁ ଦେଖୁ ତାଙ୍କର ମନହେଲା ଯେ ଏଇ ଦେଶଟା ଯାକ ପାଣି । ଉତ୍ତର ପଶ୍ଚିମରେ ଯାହାଥିଲେ ଆଉ ଏ ପାଖରେ କେବଳ ପାଣି ଖୋଲାମାଟି ଭିତରେ ଡାଉଆ ପାଣି । ବିଲରେ କଣ୍ଟାଳିଆ ପାଣି ! ଗାଡପଣା ପାଣି । କାଉଟାଏ ଖୁମ୍ପି ଗୃଲିଛି, କଣ ପାଉଛି କେଜାଣି । ଆଉ ଯେତେକ ନଇ ନାଳ ପୋଖରୀ, ଅଳେଡ଼ା ଅପରିଚ୍ଛନ୍ନଆ, ଯେଉଁଥିରେ ଏମାନେ ଦେହର ମଇଳା ଧୁଅନ୍ତି ଆଉ ଭିତରେ ପଶି ଥେଇ ଥେଇ ହୁଅନ୍ତି, ଦେଖ ଦେଖ ଆମର ଏଇ ଗୃଷୁ ଚେହେରାକୁ ଦେଖ…

ସୁଲକ୍ଷଣା ଦେବୀ ମଧ୍ୟ ପାଣିମାନଙ୍କୁ ଦେଖୁଥିଲେ । ଭାବନାର ସନ୍ଧରେ ସେମାନଙ୍କୁ ଦେଖୁଥିଲେ ଏବଂ ଲେଭଉ ଥିଲେ । ବାରମ୍ବାର ନିଜକୁ କହୁଥିଲେ ଯେ ତା'କୁ ଦେଖିଲା ପରେ ତା'ସାଙ୍ଗରେ ଦୁ'ପଦ କଥା ହୋଇ କେଉଁ ଡାକବଙ୍ଗଳା କି କେଉଁଠି ଯେତକ ପାଣିଥିବ ଦେହରେ ଅଜାଡ଼ି ଦେବେ ।

ସେ ଜନ୍ମ ହେଲା ଆଗରୁ ମୋତେ କଣ ଶୋଷ କରୁ ନଥିଲା ? ଏମିତି ଗାଧୋଇବାକୁ ଇଚ୍ଛା ହେଉ ନଥିଲା ? ନିନ୍ଦୁକମାନେ ଯାହା କହିଲେ କହିବେ ମୋର ଗୃରା ନାହିଁ ।

ନ ହେଲେ କହିବେ ଯେ ବାହାଘର ପରଠୁଁ ମୋର ଏଇ ବେମାରି ଦେଖା ଦେଇଛି । ବେମାରି କାହିଁକି ହେବ, କହୁନା ବଡ଼ଲୋକ ବିଳାସ ? ଭଗବାନ ସାକ୍ଷୀ ଅଛନ୍ତି, ମୁଁ ତାକୁ ଭଲ ପାଉଥିଲି, ଭଲପାଏ ଭଲପାଏ, ସେ ଏତେ ଭଲ ମଣିଷ, ଧଳା ପାରା, ରୁପା ଜହ୍ନ, ଉଦାର ଅକୃପଣ…ସେ ମନା କରିଥିଲେ କଣ ମୁଁ ଏ ବାଟକୁ ଆସି ପାରି ଥାଆନ୍ତି ? ମନା କରିବା ଦୂର କଥା, ସେଇ ମୋତେ ସାହସ ଦେଇଛନ୍ତି । କହିଲେ ବୋଉ ବଡ଼ବଡ଼ି ହେଲେ ହେବ, ମୁଁ ଅଛି । ସାଖ୍ୟ ପଡ଼ିଶା ଜାତିଭାଇ ବାର କଥା କହିବେ କୁହନ୍ତୁ, ପରୁଆ ନାହିଁ । ମୁଁ ଅଛି । ହସି

ହସି ହସି ଧରି କହୁଛନ୍ତି, ଯାଅମ, କେତେ ହୋଇ ଗଲଣି ପରା, କାର କେତେ-
ବେଳଠୁଁ ଅପେକ୍ଷା କରିଛ ।

ସେ କେବଳ ହାତ ଛୁଆଁନ୍ତି ନାହାନ୍ତି । ତାଙ୍କର ଓଠ ଅଛି । ଓଠ ଆଉ
ଦେହ, ଅଙ୍ଗପ୍ରତ୍ୟଙ୍ଗ । ସବୁତକ ସେ ମୋତେ ଛୁଆଁଇଛନ୍ତି । ମୁଁ କଣ କେବେ
ହେଲେ ମନା କରିଛି ? କହିଛି ଥାଉ ତୁମର ଏଇ ଭଲ ପାଇବା ? ଅନ୍ଧାରରେ
ତାଙ୍କ ସୁନାମୁହଁ ଦେଖି ଥିଲେ ମୁଁ କଣ ଭଲ ପାଇବାକୁ ନେଇ ଶୋଇ ଯାଇ
ପାରି ନଥାନ୍ତି ? ଶୋଇ ପାରୁନଥିଲି । ଆଉ ଗୋଟାଏ ମୁହଁ ମୋତେ ଚଢ଼ଉଥିଲା —
ଦେଖିଲି କେମିତି ନେଲା, ଆହୁରି ନେବ, ଶୋଷି ନେବ, ଚଉଧୁରୀ ପାଚିରୀ ଭିତରେ
ଚାପିଦେବ, ବାଧି ଚଉଧୁରୀ ବାଡ଼କା ପିଦ କୁଆଡ଼େ ? ଥରେ ମୁଁ ସତମିଛ ପରଖିଲି
ପରି ଆଲୁଅ ଜଳେଇ ଦେଲି । ଓ୍ଠର ଶବ୍ଦକୁ ଅମାନ୍ୟ କରି ତାଙ୍କ ମୁହଁକୁ
ନିରେଖିଲି । ଦେଖିଲି ସେଇ ସୁନା ମୁହଁ, ଦିବ୍ୟ ଆରାମରେ ଶୋଇଛନ୍ତି । ହେଲେ
ମୋତେ ରାଗ ଲାଗିଲା । ଏତେ ଆରାମ କାହିଁକି ? ଏମିତି ଉଶ୍ୱାସ ଲାଗିଲା, ଇସି
ହୃଦ୍‌ବୃତ୍ତିକୁ ସାରି ଦେଇ ହାଲୁକା ଲାଗିଲା ଯେ ଶାନ୍ତିରେ ଶୋଇଗଲା ?

ମୁଁ କଣ ତୁମର ଟଏଲେଟ୍ ?

ରାତିଲା ସିନା, ତା'ପରେ ମୁଁ କାନ୍ଦିଲି । ତାଙ୍କ ଓଠରେ ମୁଁ ଗୁଞ୍ଜି କ୍ଷମା
ମାଗିବା ପାଇଁ କାନ୍ଦିଲି, କହିଲି ମୋତେ ତୁମର ବାହା ହେବା ଉଚିତ ନଥିଲା ।
ମୁଁ ତୁମ ପରି ହୋଇ ପାରିବ ନାହିଁ । ମୁଁ ସତ ସ୍ତ୍ରୀ ନୁହେଁ । ମୋତେ ରୋଗ ଧରିଛି ।
ତଥାପି ସେ ଜାଣି ପାରିଲେ ନାହିଁ, କିଛି ଶୁଣିଲେ ନାହିଁ । ସେଇଠୁଁ ମୁଁ ତାଙ୍କ
ଓଠରୁ ମୁକୁଳି ଆସିଲି । ମନେ ହେଲା ମୁଁ ତାଙ୍କ ଅସନାରେ, ଚଉଧୁରୀ ନବାସର
ଘର ଦେହ ଘରକାନ୍ଥରେ ବାନ୍ଧହୋଇ ପାରିବ ନାହିଁ । ମୁଁ ଫୁଲ, ଆକାଶ ପବନରେ
ଉଡ଼ିବ, ଜଗତର ଅନ୍ୟମାନଙ୍କ ଫୁଲପତର ମାଟିଗୋଡ଼ ଜନ୍ତୁଜନ୍ତୁ । ମଣିଷ-
ମାନଙ୍କୁ ଛୁଇଁବ, ଆଗରୁ ଯେମିତି ଛୁଉଁଥିଲି । ମୁଁ ଧୂଆଧୂଇ ହୋଇ ପଳେଇବ ।
ମୁଁ ଆଉ ସମ୍ଭାଳି ପାରିଲି ନାହିଁ । ବିଛଣାରୁ ଉଠି ଗାଧୁଆ ଘରେ ପଶି
କବାଟ କଲି ଦେଲି । ଦେହରୁ ଲୁଗା ଖୋଲିଦେଇ ପାଣି ଢାଳି ହେଲି ।

ସେ ସକାଳୁ ଉଠି ଜାଣିଲେ ଯେ ମୁଁ ରାତି ଅଧରେ ଏଭଳି ବିଚିତ୍ର କାମ
କରିଛି । ସହଜେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—କାହିଁକି ? ମୁଁ କହିଲି ମୋର
ଇଚ୍ଛା ହେଲା । ସେ ଚୁପ୍ ହୋଇଗଲେ । କେଜାଣି କାହିଁକି ଡ୍ରେସିଙ୍ଗ୍ ଟେବୁଲ
ଉପରେ ଥିବା ମୋର ଫଟୋ ଆଡ଼କୁ ଚାହିଁଲେ । କଣ ଭାବିଲେ ଭଗବାନଙ୍କୁ

ଜଣା । କିନ୍ତୁ ଆଜି କେଉଁ ସ୍ୱାମୀ ହୋଇଥିଲେ କେତେ କଥା କେତେ କରି ଥାଆନ୍ତା, ଚିଆରି ଥାଆନ୍ତା । ମୋର ଉଦାର ସ୍ୱାମୀ କିଛି କଲେ ନାହିଁ । ମୁଁ ତାଙ୍କୁ ଆହୁରି ଭଲ ପାଇଲି ।

ମୁଁ ମଧ୍ୟ ମୋର ନିଜ ଫଟୋ ଆଡ଼କୁ ଅନେଇଲି । ସେ ଗଲା ପରେ ମୁଁ ତା' ପାଖକୁ ଯିବାକୁ ଚାହିଁଲି, ହେଲେ ଦୁ' ପାଦ ଆଗକୁ ଯାଇ ଘୁଞ୍ଚି ଆସିଲି । ସତେକି ସିଏ ଯୋଡ଼ି ଖଟରେ ଶୋଇ କରି ଆସିଛି । ଦେହରେ ଜଡ଼ ହୋଇ ଆସିଛି । ମୋତେ ଆଉ ଥରେ ଗାଧୋଇବାକୁ ପଡ଼ିବ ।

ଚନ୍ଦ୍ରଟ ଦିନର ଆଲୁଅରେ ମୁଁ ତାଙ୍କ ସାଙ୍ଗରେ କେତେ ଥଟ୍ଟା ନକଲି ହୋଇଥିଲି । ବୋର୍ଡ଼ ମିଟିଙ୍ଗ୍ ଅଛି ବୋଲି କହିବାରୁ ମୁଁ ତାଙ୍କୁ ନିଜ ହାତରେ ଯତନରେ ବେଶ କରିଥିଲି । ଚୁମା ଦେଇଥିଲି । ହଁ, ବେଶ୍ ଭଲକରି ଚୁମା ଦେଇଥିଲି । ଅବଶ୍ୟ ତାଙ୍କ ଆଗରେ କାନରେ ଓଠ ପୋଛିଥିଲି । ସବୁଥର ପୋଛେ, ସେ କଣ ଜାଣନ୍ତି ନାହିଁ ? ସେ କେଡ଼େ ମଜାରେ ହସିଲେ ।

ଖାଲି ମୁଁ କୋଉ ଚୁଲିକୁ ପଳେଇଲେ ପଳେଇବ ସିନା, ତାଙ୍କୁ ଗ୍ରୁଡ଼ି ରହି ପାରିବ ନାହିଁ । ମୁଁ ତାଙ୍କୁ ନିହାତି ଭଲପାଏ ।

(ପାଖ ଲୋକଟି ଚୁପ ହୋଇ ରହିଛି । ବୋଧହୁଏ ମୋର ଦାମ୍ଭିକମୂର୍ତ୍ତିଭାବକୁ ଦେଖି କିଛି ପଚାରିବାକୁ ସାହସ କରୁ ନାହିଁ । କିନ୍ତୁ କାହିଁକି ସେ ମୋ ପଛରେ ଲାଗିଛି ? ମୋ ପୁଅଠାରୁ ପାଞ୍ଚ ଛଅ ବର୍ଷ ବଡ଼ ହେବ କି ନାହିଁ । କିନ୍ତୁ ତା'ଠାରୁ ସୁନ୍ଦର । ସୁନ୍ଦର କଥଣ ମ, ସେଆଡ଼ର ଚେହେରା...ଇଏ କଥଣ ? ଆମେ ଏଠି କୁଆଡ଼େ ଆସି ପହଞ୍ଚି ଲେଣି ? ସୁଲକ୍ଷଣା ଦେବୀ ଚମକି ଉଠିଲେ । କାଚ ଝରକା ବାଟେ ଦେଖିଲେ ନଗ୍ରୁଡିଆ ଚମଛଡ଼ା ପଡ଼ିଆ ଓ କେଉଁଟା ଥୁଣ୍ଟା ଅଷ୍ଟାବକ୍ର ଗଛ-ମାନଙ୍କୁ ଅଧିକାର କଲାପରି ଉତ୍ତାରି ..ତାରି ଲାଗିଲା । କଲାପରି ଏକୁଟିଆ ବଙ୍ଗଳା, ନେଳି ପରଦା ହାଲୁଛି, ସୂର୍ଯ୍ୟମୁଖୀ ମୁହଁ ଦେଖେଇ ହସୁଛି । ସୁଲକ୍ଷଣା ପାଟିକରି ଉଠିଲେ...ମିଷ୍ଟର ପ୍ରକାଶ, ଏଠିକି କୁଆଡ଼େ ଆସିଲେ ? ଇଏ କଣ ମୋତିପୁରକୁ ଯିବା ବାଟ ?

ଲ୍ୟୋତି ପ୍ରକାଶ ଜମୁରି ଗ୍ରହାଣୀରେ କହିଲେ—ଆଜ୍ଞା ହଁ । ଏଇ ଗୋଟିଏ ବାଟ, ହାଇ-ଓ୍ୱେ ନମ୍ବର ପାଞ୍ଚ...

ସୁଲକ୍ଷଣା ଦେବୀ ନିରେଖି ଦେଖିଲେ । ନା, ଇଏ ନୁହେଁ । )

ଇଏ ନୁହେଁ । ସ୍ବାର ଧ୍ଵଜ ଭାଙ୍ଗି ଯାଇଛି । ଚେହେରା ନାହିଁ, ଆଣ୍ଠୁ ନାହିଁ, କେଉଁ ଗୋଟାଏ ମାମୁଲି ଘର, କେବଳ ମୁଣ୍ଡ ଗୁଞ୍ଜିବା ପାଇଁ । ତା' ପର ନୁହେଁ ଯେଉଁଠିକି ସେ ମୋତେ ନେଇ ଯାଇଥିଲେ ।

ସେଦିନ ରାତିର ଘଟଣା ପରେ ଦୁର୍ଦ୍ଦମନୀୟ ଭଲ ପାଇବାର ଆବିଷ୍କାର ପରେ ମୁଁ ଉପରେ ପଡ଼ି ତାଙ୍କ ସାଙ୍ଗରେ ଗେହ୍ଲେଇ ହେଇଥିଲି, ରାତି ଅଧରେ ପାଣିରେ ଧୋଇ ହେବାକୁ ଇଚ୍ଛା ହେଲେ ମଧ୍ୟ ମୁହିଁ ମାଡ଼ି ସକାଳ ଯାଏଁ ପଡ଼ି ରହିଥିଲି । ନିଜକୁ କହୁଥିଲି । ସେ ଏଇ ଦେହର କାରବାର କିଛି ନୁହେଁ, ଏତେ ସ୍ଵର୍ଣ୍ଣକାତର ହେଲେ ଚଳିବ ନାହିଁ । ମୁଁ ତାଙ୍କ ସାଙ୍ଗରେ ଲାଗେଇଲି, ତୁମେ ଯୁଆଡ଼େ ଯାଉଛ ମୋତେ ସାଙ୍ଗରେ ନେଇଯାଅ ।

ସେ ମନା କଲେ ନାହିଁ । ଶ୍ଵଶୁର ନାହାନ୍ତି । ପକ୍ଷାଘାତରେ ଶଯ୍ୟାଶାୟୀ ଶାଶୁ ମଧ୍ୟ ଆପତ୍ତି କଲେ ନାହିଁ । ରାଧୀ ରୁକ୍ମିଣୀର ସେବା ଯଥେଷ୍ଟ ବୋଲି ମାନି ନେଲେ । ଉପରନ୍ତୁ ପୁଅକୁ ଉପଦେଶ ଦେଲେ, ବୋହୂକୁ ଖରାତରାରେ ବୁଲେଇବୁ ନାହିଁ, ବଣ ଜଙ୍ଗଲ ଭିତରକୁ ନେବୁ ନାହିଁ ଇତ୍ୟାଦି । ମୁଁ ନିଜକୁ କହିଲି. ଦେଖେ, ସୁନାରେ ସୁହାଗ, ଯେମିତିକା ସ୍ଵାମୀ ସେମିତି ଘର, ପରିବାର, ଧଳୀ ଧବଳୀ ଗାଈ, ଚଉରା ଉପରେ ଏତେ ବଡ଼ ନାଲିରଙ୍ଗର ଓଁ, ଧନ ଧୂମ, ପିତଳ ହଣ୍ଡା···କେଉଁଡ଼େ ବିରାଟ ଭଲ ପାଇବାକୁ ନେଇ ସେମାନେ ତୋତେ ପାଇବେ ବୋଲି ଅଡ଼ି ବସିଛନ୍ତି । କହିଲି, ହେଲା ବୁଝିଲି, ମୁଁ ଆଗେ ସ୍ବାଙ୍କ ସାଙ୍ଗରେ ମୋର ବିଜିନେସ୍ ପକ୍କା କରିଦିଏ (ମୋର ସ୍ଵାମୀ ସବୁବେଳେ ତାଙ୍କ ବିଜିନେସକୁ ପକ୍କା କରିବା ପାଇଁ ଧାଇଁ ବୁଲନ୍ତି । )

ମୁଁ ତାଙ୍କ ସାଙ୍ଗରେ କେତେ ଆଡ଼ ବୁଲିଲି, ଆମ ନିଜର କପଡ଼ା ମିଲ୍, ଅନ୍ୟମାନଙ୍କ କାରଖାନା, ଆମ ନିଜର ଝରୋକା ପାଣିକୁଲିଆ ବଗିଚା ଘର, ସେମାନଙ୍କର ଗେଷ୍ଟ ହାଉସ୍, ଦିଲ୍ଲୀ କଲିକତାର ବଡ଼ ବଡ଼ ହୋଟେଲ, ମନ୍ଦିର, ମନୁମେଣ୍ଟ୍ ଇତ୍ୟାଦି ।

ଶେଷକୁ ଦିନେ ସେ ମୋତେ ଆଣିଲେ ସେଇ ଏକୁଟିଆ ପତ୍ୟାନାଶିଆ ଘରକୁ, ଯାହା ଦେହରେ କେବଳ କାଠ, ପଥର, ଶଙ୍ଖ, ଗୃହପାଖରେ ଚମଛଡ଼ା ପଡ଼ିଆ, ଥୁଣ୍ଟା ଅଶ୍ବତ୍ଥ ଗଛ, ଝରକାରେ ନେଳି ପରଦା, ପରଦା ଉହାଡ଼ରେ ଅଲକ୍ଷ୍ୟ ସୂର୍ଯ୍ୟମୁଖୀ···ଯାହାର ପିଣ୍ଡାରେ ଛିଡ଼ା ହୋଇ ମୋର ସ୍ଵାମୀ ଉଲ୍ଲାସରେ କହିଲେ—ଏଇ ହେଉଛି ମୋର, ଏଇଆକୁ ଦେଖ, ମୁଁ କ'ଣ କରିବି, ଚେହେରା

ବଦଳେଇ ଦେବ । ନୂଆ କାରଖାନା କରିବେ, ଫାର୍ମ ବସେଇବେ କି କଣ କରିବେ ମୁଁ ପଗ୍ଭରିଲି ନାହିଁ । କିନ୍ତୁ ତାଙ୍କ କଥା ଶୁଣି ମୋତେ ଭୟ ଲାଗିଲା । ଯେ ମୁଁ ଇଚ୍ଛା କଲେ ମଧ ତାଙ୍କୁ ଗ୍ଭଡ଼ି ପାରିବ ନାହିଁ । ସେ ଶୁଖିଲା ପୃଥିବୀକୁ ମାଡ଼ି ବସିବେ, ମଞ୍ଜି ପୋତିବେ ।

ମୋର ମନେ ହେଲା ଯେ ପ୍ରଳୟକାରୀ ମହାଦେବ ଭୟଙ୍କର ନୁହନ୍ତି । ଭୟଙ୍କର ବିଷ୍ଣୁ, ପ୍ରସନ୍ନ ପାଳକ ପୁରୁଷ । ତାଙ୍କ ଶୁଭଦୃଷ୍ଟିକୁ ନମସ୍କାର ।

ସେଦିନ ରାତିରେ ଆମର ସଙ୍ଗମ ସଂଯୋଗ ସେକ୍ସ ଯାହା କୁହ, ସେଥିରେ ମୋର ହାତ ନଥିଲା ବୋଲି କହୁ ନାହିଁ ! ବରଂ ମୋ ମନରେ ଗୋଟାଏ ବିକୃତ ବେପରୁଆ ଭାବ ଆସିଥିଲା । ନିଅ, ମଞ୍ଜି ପୋତି ଦିଅ, ଯାହାଇଚ୍ଛା କର । ହେଲେ କାମ ସରିଲା ପରେ ମୁଁ କହିଲି—ଏଇ ମୋର ଶେଷ । ଏଥର ମୁଁ ନିଜକୁ ନଷ୍ଟ କରି ଦେବି, ମୋର ସତ୍ତା ରହିବ ନାହିଁ । ଅଥବା ମୁଁ ନିଜକୁ ପରଖିବି, ମୁଁ କିଏ ବୋଲି ପଗ୍ଭରିବି । ଅନ୍ଧାରରୁ ଆଲୁଅ ଆସିଲା ଯାଏଁ ମୁଁ କ'ଣ କରିବି ଭାବି ହେଲି, ବିଛଣାରେ ଛଟପଟ ହେଲି, ବାରମ୍ବାର ମୋ ଦେହରୁ ତାଙ୍କ ହାତ ଗୋଡ଼ ଘୁଞ୍ଚେଇ ନେଲି, ଫଇସଲା ନ ହେବା ଯାଏ ବାହ୍ୟାଦୃଷ୍ଟି କରି ଗାଧୋଇବି ନାହିଁ ବୋଲି ସ୍ଥିର କଲି । ସକାଳ ପବନରେ ନେଳି ପରଦା ଫଡ଼ ଫଡ଼ ହେଲା, ସୂର୍ଯ୍ୟମୁଖୀ ଦାନ୍ତ ଦେଖାଇଲା, ଅଦୃଶ୍ୟରେ କେଉଁଠି ଗୋଟାଏ ଉପାସିଆ ଚଢ଼େଇ ଖାଇବି ଖାଇବି ବୋଲି ବିକଳ ହେଲା ।

ସୂର୍ଯ୍ୟମୁଖୀକୁ କାଟି ଦେଇ ମୁଁ ସୂର୍ଯ୍ୟଙ୍କୁ ଦେଖିଲି । କହିଲି ମୁଁ ଆସୁଛି । ଗାଧୋଇ କରି ଆସୁଛି । ଏହାପରେ ମୋତେ କେହି ଟଳେଇ ପାରିବେ ନାହିଁ । ସ୍ୱାମୀ, ଶାଶୁ, ଘର, ଚଉରା, କେହି ମୋତେ ଅଟକେଇ ପାରିବେ ନାହିଁ । ମୁଁ ପଳେଇବି ।

ମୁଁ ତାଙ୍କୁ ଏତେ ଭଲ ପାଏ ବୋଲି ପଳେଇବି । ନ ହେଲେ ମଞ୍ଜିରୁ ଗଛ ଉଠିବ । ମୋର ଚେହେରା ବଦଳି ଯିବ ।

ନିଜେ ବିଧାତା ପୁରୁଷ ମୋ ସଙ୍ଗରେ ବାଦ ସାଧିବେ ବୋଲି ମୁଁ ଭାବି ନ ଥିଲି । ରତନଗଡ଼କୁ ଫେରି ଆସିବାର କିଛି ଦିନ ପରେ ଜଣା ପଡ଼ିଲା ଯେ ମଞ୍ଜି ପୋତା ହୋଇ ସାରିଛି । ସେ କହିଲେ ପୁଅ ହେଲେ ତା' ନାଆଁ ଦେବା ପ୍ରିୟବନ୍ଧୁ, ଝିଅ ହେଲେ ପ୍ରିୟା । ହେଉ, ତୁମ କଥା ରହୁ । ମୁଁ ଶୁଖିଲା ମୁହଁରେ ହସିଲି । ତୁମେ

ଜାଣିଗଲି ବୋଲି ମନେ କର ନାହିଁ । ମୋର ଆହୁରି କେତେ ପୁଅ ଆହୁରି କେତେ ଝିଅ ଆସିବେ, ପ୍ରିୟା ପ୍ରିୟବର, ପୃଥିବୀର ଯେତେକ ଦୁଃଖୀରଙ୍କି, ଅଭାଗା, ରୋଗଣା, ମୁଁ ସମସ୍ତଙ୍କୁ ଛୁଇଁବି, ମୁକ୍ତ ହେବି ।

ପିଲାଦିନେ ବାପା କହୁଥିଲେ ମୋର ଉଦ୍ଦଣ୍ଡୀ ଝିଅର ସାହସ କିଛି କମ୍ ନୁହେଁ । ଭାବୁଛି ସେ ଯେତେକ ପଦ୍ମ ପ୍ରଜାପତିଙ୍କୁ ଧରି ପାରିବ, ଦିନେ ହେଲେ ଇନ୍ଦ୍ରଧନୁକୁ ଛୁଇଁବ । ବାପା ଏବେ ଆସି ଦେଖନ୍ତୁ (ଧଇଁ ରୋଗରେ କଣ୍ଠା ହେଲେଣି, ତଥାପି ଦିନ ରାତି କଅଣ ଲେଖି ଚାଲିଛନ୍ତି) ଯେ ତାଙ୍କ ସୁନ୍ଦରୀ ଉଦ୍ଦଣ୍ଡୀ ଝିଅର ସାହସ ଆହୁରି ବଢ଼ି ଗଲାଣି । ସେ ଯେତେକ କୁତ୍ସିତ ଅସୁନ୍ଦରକୁ ଆଗୁରବାକୁ ଚାହେଁ । ନ ହେଲେ ସେ ଏମାନଙ୍କର ଦରଦ ଭଲ ପାଇବାରୁ ବର୍ତ୍ତି ପାରିବ ନାହିଁ, ମରିଯିବ ।

ଆସନ୍ତା ପ୍ରିୟା କିମ୍ବା ପ୍ରିୟବର ପ୍ରତି ମୋର ଅହନ୍ତା ନ ଥିଲା । ମୁଁ ତା'ର ଆସିବାକୁ ଅପେକ୍ଷା କଲି । ସେ ଯଦି ତାର ମାଆକୁ ବୁଝିବ ନାହିଁତ ଆଉ ବୁଝିବ କିଏ ?

(ମୋର ଧାରଣା ସେ କ'ଣ କହିବେ ବୋଲି କହିପାରୁ ନାହାନ୍ତି, କଷ୍ଟ ପାଉଛନ୍ତି, ନ ହେଲେ ତାଙ୍କର ନାକପୁଡ଼ା ଏମିତି ଫୁଲି ଉଠୁଛି କାହିଁକି ? ତା' ଛଡ଼ା···ତାଙ୍କର ଗ୍ରୀବା ଉଠିଲା ପଡ଼ିଲା ପରି ମନେ ହେଉଛି । ଜ୍ୟୋତିପ୍ରକାଶ ଅଟକି ଗଲେ । ସତେକି ସେଇ ଷ୍ଟୀଲ ସୁନ୍ଦର ଦେଶ ଅତି ପବନ, ଅନେଇଲେ ମାଡ଼ି ପଡ଼ୁଛି )

ସେ ମତେ କମ୍ କଷ୍ଟ ଦେଇ ନାହିଁ । ପୂରା ଦୁଇଦିନ ମୋ ଭିତରକୁ ମନ୍ଥି ଦେଇଛି । ଯେତେବେଳେ ଆସିଲା ମୋର ଚେତା ବୁଡ଼ି ଯାଇଥିଲା । ଚେତା ଫେରିଲା ପରେ ନର୍ସ ମୋ କପାଳ ଆଉଁସି ଆଉଁସି କହିଲା—ଦେଖିବ, ତମ ଗୁଣମଣିକୁ ଦେଖିବ ?

ତାକୁ ଦେଖିବା ଆଗରୁ ମୁଁ ତାକୁ ପାଇବି ବୋଲି ହାତ ବଢ଼େଇ ଥିଲି ।

ନର୍ସ ତାକୁ ଯେତେବେଳେ କୋଳରେ ଧରି ଆସିଲା, ମୋ'ର ମନ ହେଲା ତାକୁ ଭିଡ଼ି ଆଣିବି । ଏଇ ମୋର, ଗୋଟିଫିଣେ ମୋର, ମୋର ଅଭିଳାଷର ପହିଲି କାନ୍ଦଣା । ତା'ପରେ ମୁଁ ତାକୁ ଦେଖିଲି । ଦେଖିଲି ନର୍ସ ମୋତେ ତାର

ମଣିଷ ଦେହର ଚମତ୍କାରକୁ ନଅ ବୋଲି କହୁଛ, ତା'ର ପୁଅ ଚନ୍ଦ୍ରକୁ ଦର୍ଶାଇଛ, କହୁଛ ଏଥର ଆଉ ରକ୍ଷା ନାହିଁ···ପଛରେ ସେ ଠିଆ ହୋଇ କେମିତି ହସୁଛନ୍ତି ଦେଖି ପାରୁ ନାହଁ ?

ମୋର ହାତ ତଳକୁ ଖସି ଆସିଲା, ଆଖିବୁଜି ହୋଇ ଗଲା । କିନ୍ତୁ ନର୍ସ ତାକୁ ଜାଣିଶୁଣି ମୋ ଉପରେ ଲଦି ଦେଇ ଗଲା ।

ପୁଅ ମୋ ଠାରୁ ଗ୍ଲଲଗଲା ପରେ ମୁଁ ଯେତେବେଳେ କହିଲି ଯେ ମୋର ଦେହ ବ୍ୟସ୍ତ ଲଗୁଛି, ମୁଁ ଯାଉଛି ଗାଧୋଇବି, ନର୍ସ ନାହିଁ କରିବା ପୂର୍ବରୁ ସେ ମୋ ସାମନାକୁ ଆସି ଆଖିରେ ଆଖି ରଖି କହିଲେ···

ତୁମେ ଭାବୁଛ ତୁମେ ସତରେ ପାଗଳୀ ନା କଅଣ ?

ସେଇ ପ୍ରଥମେ ମୁଁ ତାଙ୍କୁ ମୋ ଉପରେ ରାଗିବାର ଦେଖିଲି । ଜାଣିଲି ଯେ ସେ ହାରି ଯାଇଛନ୍ତି ।

ଅସହାୟ ହୋଇ ପଡ଼ି ରହିଥିଲି ସିନା, ସେତିକବେଳୁ ମୋର ଯାତ୍ରାର ଆରମ୍ଭ । କେହି ତାକୁ ରୋଧି ପାରି ନାହାନ୍ତି, ପାରିବେ ନାହିଁ । ଯଥା ସମୟରେ ପୁଅ ପୁଣି କୋଳକୁ ଆସିଲା, ମୁଁ ତାକୁ କ୍ଷୀର ଦେଲି । ନର୍ସ, ଡାକ୍ତର, ସ୍ୱାମୀ ଯାହା କହିଲେ ମାନିନେଲି । କିନ୍ତୁ ମୁଁ ଛଟପଟ ହେଲି କେବେ ଏଇ ପ୍ରସୂତି-ପଣ ସରିବ ଆଉ ମୁଁ ନିଜ ବାଟରେ ଯିବି ।

ଶିକ୍ସା ଖଣ୍ଡେ ଧରି ସାହି ମୁଣ୍ଡରେ ଥିବା ଜୀର୍ଣ୍ଣ ପୁରାତନ ଅନାଥଶ୍ରମ-ଠାରୁ ଆରମ୍ଭ କରି କାର୍‌ରେ ବସି ଲାଟ୍‌ସାହେବ କୋଠି, ସମାଜ କଲ୍ୟାଣ ସମିତି, ଆଉ ଏଇ ଉଦ୍‌ଭଟ ବିଦେଶୀ ବାବୁର ଫରମାଏସ୍, (ସୁଲକ୍ଷଣା ଦେବୀଙ୍କ ଓଠରେ ନିଜସ୍ୱ ଢଙ୍ଗର ହସ ଫେରି ଆସିଲା) କେତେବାଟ ଆସିଲିଣି ! ଆହୁରି ଅଛି, ନିଜକୁ କ୍ଷୟ କରି ଦେବା ପାଇଁ, ଆନନ୍ଦରେ ଅନ୍ତ କରିବା ପାଇଁ ଆହୁରି କେତେ ଭିଣ ବାକି ଅଛି ।

ପୁଅ ହସୁ ନାହିଁ ? କିଏ କହିଲା ହସୁ ନାହିଁ ? ପୃଥିବୀର କେଉଁ ପୁଅ ମୋର ନିଜର ନୁହେଁ ଯେ ମୋତେ ପାଇ ଖୁସି ନ ହେବାର ଢଙ୍ଗ କରିବ ? ଆରେ ଟୋକା, ତୋର କଣ ମନେନାହିଁ, ତୁ ମୋ ଆଡ଼କୁ ହାତ ବଢ଼େଇ ନ ଥିଲୁ, ମୁଁ ବଢ଼େଇ ଥିଲି....

(ମିସେସ୍ ଚୌଧୁରୀଙ୍କର ସ୍ମିତହାସ ସୁପ୍ରତିଷ୍ଠିତ ହେବାର ଦେଖି ଜ୍ୟୋତିପ୍ରକାଶ ସାହସ ବାନ୍ଧି କଥା ଆରମ୍ଭ କଲେ । କହିଲେ, "ଆଜ୍ଞା ଅଭୟା ନଈର ପୋଲ ଆସିଗଲାଣି, ଏଠୁ ମୋତିପୁର ପଚାଶ ମାଇଲ, ଦେଖା ଯାଉଛି ସଞ୍ଜ ନ ହେଉଣୁ ପହଞ୍ଚିଯିବା ।"

ପୁଣି କହିଲେ, "ଏଇ ଅଭୟା ନଈ ଏମିତି ସାନ ଦୁବଳିଆ ଦେଖା ଯାଉଛି ସିନା, ଏହାର ପ୍ରକୋପ କିଛି କମ୍ ନୁହେଁ, ଶୁଣିଛି ଥରେ ପଚାଶ ତିରିଶ ବର୍ଷ ତଳେ..."ସୁଲକ୍ଷଣା ଦେବୀ ତାଙ୍କ କଥା ନ ସରୁଣୁ ଅନୁଚ୍ଚ ସ୍ୱରରେ ହସି ଉଠିଲେ । ନଈର ଚେହେରା ଦେଖି ତାଙ୍କର ମନେ ହେଲା ତା'ର ପେଟ ମୋଡ଼ି ହୋଇ ଯାଉଛି, ତାକୁ ପ୍ରଥମେ ଖୁଆଇ ପିଆଇ ମଣିଷ କର, ତା'ପରେ ଯେଉଁ କଥା ।)

ମୋର ମନେ ଅଛି ସେତେବେଳେ ଛଅ ସାତ ବର୍ଷର ହୋଇଥିଲା, ମୁଁ ବାତ୍ୟା ଅଞ୍ଚଳରୁ ଅନେକ ଦିନ ପରେ ଘରକୁ ଫେରିଲି, ସେ ଡ଼ବଡ଼ବ ଚାହାଣୀରେ ମୋ ଆଡ଼କୁ ଅନେଇଲା । ବାପା ବାପା ବୋଲି ଡ଼ାକ ପକେଇଲା, କହିଲା, ବାପା ସିଏ ଆସିଲେଣି, ଯେ ମୋ ପାଇଁ ବଡ଼ ଚକୋଲେଟ୍ ଆଣି ଦେଇ ଥିଲେ (ଗତଥର ମୁଁ ତା' ପାଇଁ ବିଲାତି ବଡ଼ ଚକୋଲେଟ୍ ବାକ୍ସ ଆଣିଥିଲି) ସେ ଆସି ପହଞ୍ଚିଲାରୁ ହସି ହସି କହିଲେ, "ହଇରେ, ସେ ତୋର ବୋଉ ପରା ?" ପୀରୁ ତା' ତିନି ଚକିଆ ସାଇକେଲ ତକ ଘୂରେଇ ଘୁରେଇ ଗୁରୁଗମ୍ଭୀର ହୋଇ କହିଲା, "ମୁଁ ଜାଣିଛି ।"

ଟୋକା ଖଣ୍ଡକ କଣ କମ୍ କି ! ଫେଚକାମିରେ ତାକୁ କେହି ବଳି ଯିବ ନାହିଁ । ସେଥର ମୁଁ ତା ପାଇଁ ଗୋଟିଏ ବିଲେଇ ଛୁଆ ଆଣି ଦେଇଥିଲି । କହିଲି ମୁଁ ପୀରୁ ସେ ଖାରୁ–ଶବ୍ଦଟିକୁ ନୂଆ ଶିଖିଥିଲା ବୋଧହୁଏ—ଦେଖନ୍ତୁ କେମିତି ଡରୁଛି ? ମୁଁ ବୁଝେଇ ଦେଲି, କହିଲି, ଛୁଆଟା, ମାଆକୁ ଖୋଜି କରି ଆସିଛି କି ନା । ପୀରୁ ସେଇଠୁ ତା' ପାଖକୁ ଯାଇ ତାକୁ କେତେ ଆଉଁସିଲି ।

ମୋ ପୁଅ କଣ ଆଜଯାଏ ସେମିତି ନାହିଁ ? ଦସ୍ତାରେ ସ୍ନେହରେ ଭାଙ୍ଗି ପଡ଼ୁ ନାହିଁ ? ଦାଢ଼ି ଦିଶ ଉଠିଲେ କଣ ହେବ...ଆଜକାଲି ସେ ମୋ ସାଙ୍ଗରେ କାହିଁକି, ତା' ବାପା ସାଙ୍ଗରେ ମଧ୍ୟ ବିଶେଷ କିଛି କଥା କହୁ ନାହିଁ । କଣ କରିବ ବିଚରା, ତା' ପଢ଼ା ତାକୁ ବିଲେଇ ପଡ଼ୁଛି ।

ମନେ ମନେ ମରଦ ହୋଇ ଗଲାଣି । ଏଇ ଦୁଇବର୍ଷ ତଳେ ଇଞ୍ଜିନିଅରିଙ୍ଗ୍ କଲେଜକୁ ଯିବାର କିଛିଦିନ ପୂର୍ବରୁ ମୁଁ ତାକୁ ଥରେ କୋଳକୁ ଟାଣି ନେଲି

କରିବାକୁ ବସିଲି । ବାପ୍‌ରେ, ବାବୁ ରାଗିମାଗି କମ୍ପମାନ । ରୁଷ୍ଟିପିଷ୍ଟି ହୋଇ ପଳେଇ ଗଲା ଆଉ ଦୁ'ପଦ ଇଂରେଜ ଝାଡ଼ି ଦେଇ କହିଲା—ଡୋଣ୍ଟ ବି ସିଲିଲି ।

ଅନେକ ଦିନୁ ତା' ସାଙ୍ଗରେ ଦେଖା ହୋଇ ନାହିଁ । ଗରମିଦିନ ଛୁଟିରେ ଆସିଥିଲା, କିନ୍ତୁ ସେତେବେଳେ ନଣପଡ଼ା ଅଞ୍ଚଳରେ ହଇଜା ଲାଗିଥିଲା, ମୋତେ ମରିବାକୁ ଫୁରୁସତ ନଥିଲା । ମୁଁ ଯେଉଁଦିନ ଘରକୁ ଫେରିଲି, ସେ ତା'ପର ଦିନ ମୋତିପୁର ବାହାରିଲା । ମୁଁ କହିଲି—ଆଉ ଦିନେ ରହି ଯାଉନୁ ? ଅସୀମ ଆଶ୍ଚର୍ଯ୍ୟର ଢଙ୍ଗ ଦେଖାଇ ସେ ମୋ ଆଡ଼କୁ ଚାହିଁ କହିଲା—କାହିଁକି ?

ସବୁ ଢଙ୍ଗ । ଫେଚକାମି । ମୋ ପୁଅକୁ ମୁଁ ଜାଣେ । ମୋର ଲୋକ-ସେବାବ୍ରତ, ସାଧନା, ଆନନ୍ଦ, ସବୁଥିରେ ତାର ଭାବ ରହିଛି । ମୁଁ ତାକୁ ପିଲାଦିନେ କେତେ ଗପ କହିଛି, ଅନ୍ୟ ପିଲାଙ୍କ କଥା, ଦୁଃଖୀରଙ୍କି, ଗରିବ ଗୁରୁବାଙ୍କ କଥା, କହିଛି ସେ ଯେମିତି ଅନ୍ୟମାନେ ସେମିତି, କେହି ଜଣେ ଜଣେ ନୁହନ୍ତି···ସେ ସବୁ ଶୁଣିଛି, ପିଇ ଯାଇଛି । ଏଥର ମୁଁ ତାକୁ ଛାଡ଼ିବି ନାହିଁ, ଦରକାର ହେଲେ କାନ ମୋଡ଼ି ଦେବି । ସେ ମୋତେ କଣ ବୋଲି ପାଇଛି କି ?

ମୋତିପୁରରେ ପହଞ୍ଚିଲା ବେଳକୁ ଅନ୍ଧାର ହୋଇ ନ ଥିଲା । ଗ୍ରେଟ ସହର ଉପରକୁ ସଞ୍ଜ ନଇଁ ଆସିଥିଲା । ଗୋଟିଏ ପୁରୁଣା ମନ୍ଦିର ଓ କେତୋଟି ସାନ ଘର ମୁଣ୍ଡ ଟେକି ଜଣାଉଥିଲେ ଅନ୍ତତଃ ଆମେ ଅଛୁ । ଜ୍ୟୋତିପ୍ରକାଶ ସଫେଇ ଦେଲା ପରି କହିଲେ—ଜାଗାଟି ଏଇକ୍ଷଣି ଏମିତି ଶାନ୍ତ ଦେଖା ଯାଉଛି ସିନା···

"କଲେଜ୍ କାହିଁ ?"

ଉତ୍ତର ନ ପାଇ ସୁଲକ୍ଷଣା ଦେଖା ପ୍ରଶ୍ନକୁ ଦୋହରାଇଲେ । ସ୍ୱରରେ ଅସନ୍ତୁଷ୍ଟ ଭାବ । "କାହିଁ ? ଇଂଜିନିଅରିଙ୍ଗ୍ କଲେଜ । ସେଠି ମୋର ପୁଅ ପାଠ ପଢ଼େ ବୋଲି ଆପଣ ଜାଣନ୍ତି ନାହିଁ ?"

ଜ୍ୟୋତିପ୍ରକାଶ ଲଜ୍ଜିତ ହେଲେ । ଡ୍ରାଇଭରକୁ ସେଠୁ ପାଞ୍ଚମାଇଲ ଦୂରରେ ଥିବା ଇଂଜିନିୟରିଙ୍ଗ୍ କଲେଜ କ୍ୟାମ୍ପସକୁ ଶୀଘ୍ର ଦଉଡ଼େଇ ନେବାକୁ ଆଦେଶଦେଲେ ।

କଲେଜ୍ ହଷ୍ଟେଲ୍‌ରେ ପହଞ୍ଚିଲା ବେଳକୁ ଅନ୍ଧାରକଲା ତଥାପି ଲେସି ହୋଇ ଯାଇ ନ ଥିଲା । ହଷ୍ଟେଲ ବଗିଚାର ନାଲି ଗୋଲାପମାନ ଅନ୍ଧାରଠାରୁ ଅଧିକ ଘନ ଭାବକୁଡ଼ବୁଡ଼ୁ ବୋଲି ନିଜକୁ ଦେଖାଇ ହେଉଥିଲେ ।

ହେଲେ ପ୍ରିୟବ୍ରତ ଚୌଧୁରୀଙ୍କର ମୁହଁ ଶେତା ଦେଖା ଯାଉଥିଲା । ଖବର ପାଇ ତଳକୁ ଓହ୍ଲାଇ ଆସି ସେ ଦୁଇ ଜଣଙ୍କୁ ନମସ୍କାର କଲା । ନମସ୍କାର ସାଙ୍ଗକୁ ଓଠ ମଧ୍ୟ ଯଥୋଚିତ ଲମ୍ବି ଯାଇ ସଜାଡ଼ି ହୋଇଗଲା । ସୁଲକ୍ଷଣା ଦେବୀ ଅନୁମାନ କଲେ ତା'ର ଆଖି ତଳେ ସେଇ ଯେଉଁ କଳା ଦାଗ, ପିଲା ଦିନେ ପଣତ ଉପରେ ଯାଇଥିଲା (ମୋ ପଣତ ନୁହେଁ, ଜଗାମା' ମାଛ କାଟୁଥିଲା ଯେ ତା'ର ଉପରେ, ଭାଗ୍ୟ ଭଲ ବଡ଼ ମାଛ, ଜଗାମା'ର ମୋଟା ଜଙ୍ଘ, ନ ହେଲେ···)ସମତୁଲହୋଇ ଯାଇଛି । ତଳ ଓଠର ମଝିରେକାନ ସେଇ ଯେଉଁ କଳାଜାଇକୁ ଖୋଜଲେ । ମୋର ସବୁ ମନେ ଅଛି । ଦେଖା ଯାଉନାହିଁ ସିନା ଅଛି । ତା'ର୍ ଗୃହାଣୀ ସ୍ଥିର ହେଲେ ମଧ୍ୟ କଣ ଜାଣିବ ବୋଲି ଭାବୁଛି । ଯେତେ ଅନ୍ଧାର ହେଉ, ମୁଁ ମୋ ପୁଅର ଗୃହାଣୀକୁ ଚିହ୍ନି ପାରିବ ନାହିଁ ?

''ବୋଉ, ତୁ କୁଆଡ଼େ ?''

ସୁଲକ୍ଷଣା ଦେବୀ ଚମକି ପଡ଼ିଲା ପରି ମନେ ହେଲା । ସତେକି ସେ ଏଇ ମୁହୂର୍ତ୍ତରେ ସ୍ଥୂଳ ପ୍ରଶ୍ନର ଶବ୍ଦ ପାଇଁ ପ୍ରସ୍ତୁତ ନ ଥିଲେ, ସେ ପୁଅର ଗୃହାଣୀକୁ ଛୁଇଁବ କୁ ଯାଉଥିଲେ । କହିଲେ,

''ମୁଁ ଆସିଥିଲି ପରା···(ମୁଁ ତୋ ପାଖକୁ ଆସିଛି, ତୋର ଦେହମନ ଭଲ ନାହିଁ ଶୁଣିଲେ ମୁଁ ସବୁ କାମ ପଛରେ ପକେଇ ଧାଇଁ ଆସିଥାନ୍ତି) ମିଷ୍ଟର ପ୍ରକାଶ କହିଲେ ଏଠି କଣ ଦଙ୍ଗାହାଙ୍ଗାମା ଲାଗିଛି, ମୁଁ ନ ଆସିଲେ ଚଳିବ ନାହିଁ । ମୁଁ ସବୁ କାମ ପଛରେ ପକେଇ ଚାଲି ଆସିଲି, ତୋତେ ବହୁତ ଦିନୁ ଦେଖି ନ ଥିଲି···''

''ଓ—''

ଚାଲେ ଭିତରକୁ ଯିବା, ମାଆ ପୁଅଙ୍କର କେତେ କଥା କହିବାର ଅଛି । କିନ୍ତୁ ପୀରୁ ଭିତରକୁ ଡାକିଲା ନାହିଁ । ଜ୍ୟୋତିପ୍ରକାଶ ଦୂରେଇ ଗଲେ, ତେବେ ସେଥିରେ କିଛି ଲାଭ ହେଲା ନାହିଁ । ପୀରୁ କାଠ ପରି ଛିଡ଼ା ହୋଇ ରହିଲା । ମନେ ହେଲା ସେ ଆଦେଶ ଅନୁଯାୟୀ ଆସିଛି, ଛିଡ଼ା ହୋଇଛି, ଅପେକ୍ଷା କରିଛି କେତେବେଳେ ଛୁଟି ମିଳିବ । ଦେହ କେମିତି ଅଛି, ପାଠପଢ଼ା କେମିତି ଚାଲିଛି, ପରୀକ୍ଷା କେବେବୋଲି ସୁଲକ୍ଷଣା ପଚାରିଲେ । ପୀରୁ ଠିକେ ଠିକେ ଉତ୍ତର ଦେଲା । ବାପା କେମିତି ଅଛନ୍ତି ପୀରୁ ପଚାରିଲା । ସୁଲକ୍ଷଣା ଭଲ ବୋଲି କହିଲେ । ସ୍ୱାମୀ କେବେ ଭଲ ନ ଥିଲେ ବୋଲି ତାଙ୍କର ମନେ ପଡ଼ିଲା ନାହିଁ ।

ସୁଲକ୍ଷଣାଦେବୀ-ପୀରୁର କାନ ମୋଡ଼ି ପାରନ୍ତେ ନାହିଁ । ନିଜକୁ ପଚାରନ୍ତେ ସେ କଣ ଦୋଷ କରିଛି କି ?

ଗଲା ବେଳକୁ ସେ ପୁଅର ଦେହରେ ହାତ ରଖି ଯାଉଛି ବୋଲି କହିଲେ । ପୀରୁ ଘୁଞ୍ଚିଗଲା ନାହିଁ । କିନ୍ତୁ ସୁଲକ୍ଷଣାଙ୍କର ମନେ ହେଲା ଯେ ତା ଦେହର ଦୁର୍ଗନ୍ଧକୁ, କଣ୍ଟା ଦାଗ, କଳାଯାଇ ସବୁ ଗୁଡ଼େଇ ହୋଇ ଯାଇଛି··· କାହାରିକୁ ଛୁଇଁ ହେବ ନାହିଁ । ପୀରୁ ନାହିଁ ।

ସେଦିନ ରାତିରେ ଡାକବଙ୍ଗଳାରେ ସବୁ ସରଞ୍ଜାମ ପ୍ରସ୍ତୁତ ଥିଲା । ବାଥ୍‌ଟବ୍‌ରେ ପାଣି ଭର୍ତ୍ତି ହୋଇ ରହିଥିଲା । ମନଇଚ୍ଛା ପାଣି ଢ଼ାଳି ହୋଇ ନିଜକୁ ଫେରି ପାଇଲାବେଳେ ସୁଲକ୍ଷଣା ଦେବୀଙ୍କର ମନେ ହେଲା ଏଥର ସବୁ ଧୋଇ ପୋଛି ହୋଇ ଯାଇଛି । କେବଳ କଳା ମଇଳା ନୁହେଁ, ଯେତେକ ସ୍ନେହ ସୁଆଗ, ଅନାବଶ୍ୟକ, ମେଦମାଂସ । ରହିଲା ଚକଚକ ଧୋବଳା ହାଡ଼ । ସବୁଠାରୁ ସୁନ୍ଦର ।

ଏହାପରେ ସୁଲକ୍ଷଣା ଦେବୀଙ୍କର ଗତିବିଧି ଲକ୍ଷ୍ୟ କରି ଲୋକମାନେ ତାଟକା ରହିଗଲେ । ଭଦ୍ର ମହିଳାଙ୍କର କଣ ହୋଇଛି ? ଭୂତ ଧରିଛି ? ମୁହୂର୍ତ୍ତେ ବିରାମ ନାହିଁ । ଚର୍କି ପରି ଘୂରୁଛି । ଯେତେକ ଏ ଦେଶର ଯେତେକ ଦୁଃଖୀ ପ୍ରାଣୀମାନଙ୍କୁ ସେ ଦେଖି ଆସିବାକୁ ଗ୍ଭହେଁ, କେବଳ ଡ଼ାକିଲେ ହେଲା । ବସ୍ତିରୁ ସହର, ଉତ୍ତର ଦକ୍ଷିଣ, ଆର୍ତ୍ତୀ ସ୍ୱାର୍ଥୀ କିଏ ଡାକୁଛି କୁହ, ମୋତେ ବସିବାକୁ ଦିଅ ନାହିଁ । ରତନଗଡ଼ ଚଉଧୁରୀ ନିବାସକୁ ଫେରିବା କେହି ଦେଖି ନାହିଁ । ପୁଣି 'ସୁଲ ଅପା' ଡାକ ବଦଳି ଯାଇ 'ବଡ଼ ଅପା' ହେଲା, ମନେ ହେବ ତାଙ୍କ ପାଖକୁ ଆସିବାର ସାହସ ଆଉ କେହି କରି ପାରୁ ନାହାନ୍ତି, ସେ କେବଳ ବଡ଼ ଭଉଣୀ, କେତେ ବଡ଼ । ଲୋକମାନେ କୁହାକୁହି ହୁଅନ୍ତି-ଦେଖିନା, ସେ ଆଗ ଭଳି ସେମିତି ହସୁ ନାହାନ୍ତି ! ହସୁଛନ୍ତି ଯେ ମାନେ ସେମିତି ମିଠା କିନ୍ତୁ ସେ ଅନ୍ୟମାନଙ୍କ ପାଇଁ ମିଠା ବାଣ୍ଟୁଛନ୍ତି, ନିଜପାଇଁ କିଛି ରଖୁ ନାହାନ୍ତି । ଧାଡ଼ି, ତୋର କଳ୍ପନା ଅମଡ଼ା ମାଡ଼ି ଯାଉଛି । ବୟସ ହେଲଣି, ବୁଝୁନାହିଁ ? ବୟସ ? ଅତି ଅଦ୍‌ଭୁତ କଥା ଶୁଣିଲା ପରି ଆଲୋକ ହସି ଉଠେ ।

ବିଶେଷ ପରିବର୍ତ୍ତନ ହେଇଛି ଯେ ଶ୍ରୀଯୁକ୍ତ ଜ୍ୟୋତିପ୍ରକାଶ ତାଙ୍କୁ ବଡ଼ ଅପା ବୋଲି ଡ଼ାକିବାକୁ ଚେଷ୍ଟା କଲେ ।

ଏମିତି ବର୍ଷ ପରେ ବର୍ଷ ବିତି ଯାଇଥାନ୍ତି । ସୁଲକ୍ଷଣା ଦେବୀ ମତସତକା ବୁଢ଼ୀ ହୋଇ ଯାଇ ଥାଆନ୍ତେ । କିନ୍ତୁ ପାଞ୍ଚ ବର୍ଷ ନ ପୁରୁଣୁ ଅଭସ୍ଥା ନଈରେ ବଢ଼ି ଆସିଲା । କାହିଁ ନ ଥିବା ବଢ଼ି । ମୁଣ୍ଡୁକୁଟିଆ ନଈରେ ଏତେ ତେଜ ଅଛି ବୋଲି କେହି ବିଶ୍ୱାସ କରି ପାରିଲେ ନାହିଁ । ପାଣି ମିଛ ବନ୍ଧଗୁଡ଼ାକୁ ଭାଙ୍ଗି ଦେଇ ହାଉଯାଉ ହୋଇ ପଶି ଆସିଲା । ଗାଆଁ ଗଣ୍ଡା ବୁଡ଼ିଗଲା । ଗାଈ ଗୋରୁ ଭାସିଲେ । ମଣିଷ ମଲେ । କହିବା ବାହୁଲ୍ୟ ଯେ ଗଦା ଗଦା ସ୍ୱେଚ୍ଛା ସେବକ, ଅଫିସର, କର୍ମଚାରୀ ବୋଟ୍‌ରେ ବସି ଚୂଡ଼ାଗୁଡ଼ଲ ବାଣ୍ଟିବା ପାଇଁ ଭିଡ଼ ଜମେଇଲେ । ମୁଖ୍ୟ ମନ୍ତ୍ରୀ ବାରମ୍ବାର ଉପରେ ଉଡ଼ିଲେ ।

ବଡ଼ ଅପାଙ୍କୁ ସହଜେ ଧରି ହେଲା ନାହିଁ । ସତେକି ତାଙ୍କ ଦେହରେ ଡେଣା ଲାଗିଛି, ସେ ସ୍ୱଇଚ୍ଛାରେ ଏଠୁ ବୋଲି ସେଠି ଉଡ଼ି ପଳାଉଛନ୍ତି । କେଉଁ ସର୍ବହରା ବୁଢ଼ୀ କହିଲା, କାଲି ଏଠିକି ଆସିଥିଲେ ଲୋ, ମୋତେ ତାଙ୍କ ଗୋଡ଼ରେ ଭିଡ଼ି ଧରି କହିଲେ ମୁଁ ପୁଣି ଆସିବି । ସେଇଦିନ ସେ କାହି କେତେ ଦୂରରେ କେଉଁ ବାଉରି ସାହି ଛାତ ଉପରେ ବସି ଶୁଖୁଆ ଖାଇବାର ଶୁଣାଗଲା । ନକେ ଜ୍ୟୋତିପ୍ରକାଶ—ସେତେବେଳକୁ ସେ କମିଶନର ହେଲେଣି—ତାଙ୍କୁ ଖୋଜି ଖୋଜି ସେ ନୟାନ୍ତ ହେଲେ । ଶେଷକୁ ସେ ତାଙ୍କୁ ଉଦ୍ଧାର କଲେ, ପାଖ ଛାଡ଼ିଲେ ନାହିଁ । ଦିନେ ରାତି ନ ପାହୁଣୁ ବଣବାବାର ଉଞ୍ଚ ବିଶ୍ରାମକୁଟୀର ବାରଣ୍ଡାରେ ଦୁହେଁ ଲଗା ଲଗି ହୋଇ ଛିଡ଼ା ହୋଇ ରହିବାର ଲୋକେ ଦେଖିଛନ୍ତି ।

ସେ କେମିତି କେଉଁବାଟେ ଖସି ଆସିଲେ, ଏକୁଟିଆ ଅଭସ୍ଥାର ଭଙ୍ଗା ପାଣିକୂଳକୁ ଆସିଲେ, ନିହିତ ଭାଙ୍ଗୁଥିବା ପାଣି ସାଙ୍ଗରେ କଥାବାର୍ତ୍ତା ହୋଇ ବୁଲିଗଲେ, ସେଇ ଅପୂର୍ବ ଦୃଶ୍ୟ କିଏ କେତେ ଭାବରେ ବର୍ଣ୍ଣନା କଲେ । ଦୁଇ ଆଖିରେ ଦେଇଛନ୍ତି ବୋଲି କହିଲେ । ହାୟ ହାୟ କଲେ । ହରିଭୂଷଣ ନାଏକ ସେବତିଗାଆଁ ଡାକ୍ତରଖାନା ତରଫରୁ ଔଷଧ ପାଣି ବାଣ୍ଟିବା ପାଇଁ ଆସିଥିଲା ।। ସେ ଖବର ପାଇ ସର୍ବଜନ ସମ୍ମୁଖରେ ପାଟି କରି ଉଠିଲା—ସବୁ ତାରି ଦୋଷ । ସେଇ ପଶ୍ଚିମା ଟୋକା । କାହିଁକି ? କାହିଁକି ସେ ବଡ଼ଅପାକୁ ବାନ୍ଧି ରଖିଲା ? ସେ ବଡ଼ ଅପାର ପୁଅ ନା ମାଲିକ ନା କଅଣ ?

ବିଚରା ଭାବି ପାରିଲା ନାହିଁ ଯେ ହାଡ଼ର ମଧ୍ୟ ଲୋଭ ଅଛି । ଲୋଭରେ ପାପ ଥାଉ ନ ଥାଉ ମୃତ୍ୟୁ ଅଛି । ସେଥିପାଇଁ କାହାକୁ ଦୋଷ ଦେବାର ନୁହେଁ ।

# ଜିଜ୍ଞାସା

ଶୁଣ ମୁଁ କ'ଣ କହୁଛି – ଯାହା ହେବାର ହୋଇଯାଇଛି, ସବୁ ଅତୀତକୁ ଭୁଲିଯାଅ, ପୋଛିଦିଅ, ପ୍ଲି...ଜ୍ !

"ଭୁଲିଯିବି ? କେମିତି ଭୁଲିଯିବି ? କାହିଁକି ଭୁଲିଯିବି ? ତୁମେ ପୁଣି ଥରେ ମୋତେ କୁଣ୍ଢେଇଧରିଲ, ଗେହ୍ଲା କଲ, କ୍ଷମା ମାଗିଲ—ସେଇଥିପାଇଁ ?"

"ନା—ନା – ପୁଣିଥରେ ନୁହେଁ । ମୁଁ ପୂର୍ବପରି ତୁମ ପାଖକୁ ଫେରି-ଆସିଛି । ତୁମେ ଦେଖିଛ ସୁମି, ତୁମେ ଦେଖିଛ, ମୁଁ ମୋ ଠାକୁରଙ୍କୁ ଛୁଇଁ ଶପଥ କରି କହୁଛି..."

"ଶପଥ ?" ସୁମତି ବନ୍ଦୁକର ହସଟିଏ ଛାଡ଼ିଦେଇ ଦରଜା ପାଖରୁ ଡ୍ରେସିଂ ଟେବୁଲଯାଏଁ ଘୁରି ଆସିଲେ, ବିଛଣାରେ ଶୋଇ ରହିଥିବା ସ୍ୱାମୀଙ୍କ ଆଡ଼କୁ ନ ଅନାଇ ଦର୍ପଣକୁ ଆକ୍ରମଣ କଲେ, ସେଇଠୁ ଖୋଲା ଝରକା ପାଖରେ ଛିଡ଼ା ହୋଇ କହି ଚାଲିଲେ "ତୁମର ପ୍ରଣୟ ନାଟ୍ୟମ, ରକ୍ତଲେଖା ଗଡ଼ ପ୍ରମିଜ୍, ଶପଥ ସବୁ ମୁଁ ଦେଖିସାରିଛି । ଥରେ ନୁହେଁ...ଦୁଇଥର ନୁହେଁ...ନା । ଏଇ ମୋର ଶେଷ କଥା । ତୁମେ ମୋତେ ଛୁଇଁବ ନାହିଁ, ମୋ ପାଖକୁ ଆସିବ ନାହିଁ । ମୁଁ କେବଳ ତୁମ ସ୍ତ୍ରୀ ହୋଇମୋର କର୍ତ୍ତବ୍ୟ କରିଯିବି, ପିଲାମାନେ ବଡ଼ ହେବା ଯାଏ ତାଙ୍କ ଖବର ବୁଝିବି ..ତା'ପରେ ମୁଁ ଯେଉଁଠିକି ହେଲେ ଚାଲିଯିବି—

ମୁଁ ଆଉ ପାରିବି ନାହିଁ – ନାହିଁ, ନାହିଁ ।"

ସୁମତି ଆଉ କିଛି କହି ପାରିଲେ ନାହିଁ । ଭାଙ୍ଗି ପଡ଼ିଲେ । କାନ୍ଥରେ ମୁଣ୍ଡରଖି କାନ୍ଦିବାକୁ ଲାଗିଲେ । ସୁକାନ୍ତ ବାବୁ ବିଛଣାରୁ ଉଠିଯାଇ ସ୍ତ୍ରୀଙ୍କ ପାଖକୁ ଗଲେ, ନତଜାନୁ ହୋଇ ତାଙ୍କ ପାଦକୁ ଧରି କହିଲେ—ସୁମି, ମୋ ସୁମି, ମୋତେ ଛାଡ଼ି ଦିଅ ନାହିଁ, ମୁଁ ତୁମକୁ ନେହୁରା ହେଉଛି—ବରଂ ମୋତେ ମାରିଦିଅ ।'

ସୁମତିଙ୍କ କାନ୍ଦଣା ଥମିଗଲା, କିନ୍ତୁ ଥରେମାତ୍ର ଜିଜ୍ଞାସା ତାଙ୍କ ମନକୁ ଛୁଇଁଲା ନାହିଁ । ବରଂ ସାମାନ୍ୟ ଘୃଣା ମିଶା ଦୟା—ସେ ଧୀରେ ଧୀରେ ନିଜକୁ

ଘୁଞ୍ଚେଇ ନେଲେ । ଆପଣା ବିଛଣାକୁ ଯାଇ ଗୋଡ଼ ଟେକି ବସିଲେ । ଶୂନ୍ୟ ଦୃଷ୍ଟିରେ ଜଳି ଯାଉଥିବା ବିଜୁଳି ଆଲୁଅ, ଖୋଲେଇ ଧକେଇ ଗୁହଁବସିଥିବା ବୁଢ଼ୀଆଣି, ନିର୍ଜୀବ ନିର୍ଜନ ଅପେକ୍ଷାରେ ଜଡ଼ଭୂତ ବିଭିନ୍ନ ପଦାର୍ଥମାନଙ୍କପ୍ରତି ଦୃଷ୍ଟି ଦେଖାଇଲେ । କାନ୍ଥ ଘଣ୍ଟାରେ ସମସ୍ତ ଟିକ୍ ଟିକ୍ ହୋଇ ଚାଲୁଛି । ଚାଲୁ କେତେ ଚାଲିବ । ନାଲି ନେଳି କାଗଜ ଫୁଲ କେବେ ହୁଏତ ସଜଫୁଲ ସାଙ୍ଗରେ ମିଶିଯିବ ବୋଲି ମନେ କରୁଛି । କିନ୍ତୁ, କିଏ ମନା କରୁଛି । ବୁଢ଼ୀଆଣୀ ଗୁହଁ ବସିଥାଉ । ବିଜୁଳି ଆଲୁଅ ଜଳି ଯାଉ···

ମୋର ଏଇ ସ୍ୱାମୀ ଜଣକ ଯାହା କହିବାର କହିଯାଉ, ପଢ଼ୁ ଉଠୁ, କାନ୍ଦିଲେ କାନ୍ଦୁ, ଯେତେ ଯାହା ଭେଲିକି ଦେଖାଇବାର ଦେଖାଉ···ଥକି ଯାଉ । ମୁଁ ପୁଣି ତା'କଥାରେ ଭାସି ଯାଇ ନିଜକୁ ଠକିବି ନାହିଁ ।

ତଥାପି ସ୍ୱାମୀ ସୁକାନ୍ତବାବୁ କେତେବେଳେ ଚଟାଣରୁ ଉଠି ଶ୍ରୀକୃଷ୍ଣଙ୍କ ଫଟୋ ପାଖରେ ଧ୍ୟାନ ମୁଦ୍ରାରେ ବସିଲେ, ସେଇଠୁ ଦରଜଳା ସିଗାରେଟ୍‌ରେ ନିଆଁ ଲଗେଇ ଦୁଇତିନି ଫୁଙ୍କ ଟାଣିଲେ, ତା'ପରେ ବିଛଣାରେ ଲେଟି ପଡ଼ିଲେ— ଏଇ ଦୃଶ୍ୟଗୁଡ଼ିକର ଚେନାଏ ଚନ୍ଦ୍ରଡ଼ାଏ ତାଙ୍କ ଆଖିରେ ପଡ଼ିଲା । ମୁଁ କଣ ଜାଣିଶୁଣି ଦେଖୁଛି ନା କଅଣ ? ତାଙ୍କ ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ, କିନ୍ତୁ ଏଇ ବନ୍ଦ କୋଠରୀରେ ଆମେ ଦୁଇପ୍ରାଣୀ, ଆଖି ନ ବୁଜିଲେ ଏକ ଅପରକୁ ଅନ୍ଧାର କରିଦେବ କେମିତି ?

ଏଇ ମୋର ସ୍ୱାମୀ ଜଣକ । ମୋର ବୋଲି କହୁଛି ବୋଲି ମମତା ନାହିଁ । ବହୁବର୍ଷ ତଳେ ବାହା ହୋଇଥିବାର, ସୁନ୍ଥାରେ ସିନ୍ଦୂର ଲଗାଇଥିବାର ସାମାନ୍ୟ ସତ୍ୟ । ତାକୁ କାଢ଼ିଦେବାର ଉପାୟ ନାହିଁ ।

ମୋର ଏଇ ସ୍ୱାମୀ ଜଣକ । ପୁଣି ଗୋଟାଏ ସିଗାରେଟ ଧରେଇଲେଣି ନା କଅଣ । ସଞ୍ଜବେଳକୁ ପନ୍ଦର କୋଡ଼ିଏ ଖଣ୍ଡ ଫୁଙ୍କି ସାରିବେଣି । ଏଇ କେତେଦିନ ତଳେ ଡାକ୍ତର ଗଲା, ଛାତି ପରୀକ୍ଷା କରି ବାରଣ କରିଥିଲା— ଫୁଙ୍କିଲେ ଫୁଙ୍କନ୍ତୁ, ନିଜ ବିଷତିକ ମନଇଚ୍ଛା ଶୋଷି ନିଅନ୍ତୁ, ମୋର କଅଣ ଅଛି ।

ସେ ମଧ୍ୟ କଷ୍ଟ ପାଉଛନ୍ତି । ସନ୍ତାପରେ ସନ୍ତୁଳି ହେଉଛନ୍ତି ।

ମୁଁ କଅଣ ଜାଣେ ନାହିଁ ସେ କଷ୍ଟ ପାଉଛନ୍ତି ବୋଲି ? କଅଣ ହେଲା ସେଥିରୁ । ମୁଁ ଯାଇ ତାଙ୍କ ହାତ ଧରିବି, ତାଙ୍କୁ ଆଉଁସି ଦେବି, କ୍ରମଶଃ ଏକରୁ ଦୁଇ, ଦୁଇରୁ ତିନି···?

ମୁଁ କଅଣ ପୂର୍ବରୁ ସେଇଆ କରି ନଥିଲି ? କରିଥିଲି । ତାଙ୍କ ଅନୁତାପ, ଶପଥକୁ ବିଶ୍ୱାସ କରି ପାଖକୁ ଟାଣି ନେଇଥିଲି, ଛାତିରେ ଶୁଆଇ ପକେଇ ଭାବିଥିଲି ଏଇ ହେଉଛି ଶେଷକଥା···ଶାନ୍ତି । ତା'ରି ଫଳ ମୁଁ ଭୋଗୁଛି ।

ଥରକୁ ଥର ସେ ମୋତେ ଠକେଇଛନ୍ତି । ବିଶ୍ୱାସରେ ବିଷ ଭରି ଦେଇ-ଛନ୍ତି । ଅନ୍ଧାର ଆଞ୍ଚୁଳିରେ ବିଷ୍ଠା ଦାନ କରି ଆପଣା ବାଟ ଧରିଛନ୍ତି ।

ମୋର ଏଇ ସ୍ୱାମୀ ଜଣକ···ଅବିଶ୍ୱାସୀ ।

ଏଇକ୍ଷଣି ସୋରଶବ୍ଦ ନାହିଁ । ଅଚେତନ ହୋଇପରି ପଡ଼ି ରହିଛନ୍ତି । ବୋଧହୁଏ ଭାବୁଛନ୍ତି ଯେ ତୁମି ସତକୁ ସତ ସବୁଦିନ ପାଇଁ ଛାଡ଼ି ଦେଇଛୁ । ବଞ୍ଚି ରହିବାର ମୂଲ୍ୟ ସରିଯାଇଛି ।

ତୁମେ ତାଙ୍କର ଇଚ୍ଛା ହେଲା କ୍ଷଣେ ପାଇଁ, ମାତ୍ର କ୍ଷଣକପାଇଁ ସେଆଡ଼କୁ ଚାହିଁବେ, ସ୍ୱାମୀଙ୍କର ମୁହଁକୁ ଦେଖିଲେ, ମେଇ ବିଧ୍ୱସ୍ତ ଅନୁତପ୍ତ ମୁହଁର ଭାଷାଣୀକୁ ଦେଖିନେଇ ଆପଣା ବିଚାର, ଦୃଢ଼ପଣକୁ ଫେରିଅସିବେ ।

ନା, ମୁଁ ଦେଖିବି ନାହିଁ । ମୁଁ ନିଷ୍ଠୁର ନୁହେଁ । ମୁଁ ଜାଣେ ସେ ପ୍ରକୃତରେ ଅନୁତପ୍ତ । କିନ୍ତୁ ···କିନ୍ତୁ ସେ ମୋ ପରି ନୁହନ୍ତି । ସେ ଇଣ୍ଟେଲେକଚୁଆଲ । ଅଳ୍ପଦିନ ପରେ, ହୁଏତ କେତେ ମାସ କେତେବର୍ଷ ପରେ ସେ ପୁଣି ଅବାଟକୁ ଯିବେ । ପୁଣି ସେଇ ରାକ୍ଷସୀ ପାଖକୁ ଯିବେ । ମୁଁ ତାଙ୍କ ପକେଟରୁ ଦୁଇଧାଡ଼ି ଲେଖାକାଗଜ ଖଣ୍ଡେ କିମ୍ବା ନୂଆ ଫୋନ୍ ନମ୍ବର ଆବିଷ୍କାର କରିବି, ଖୋଲି ଚାଲି ପଚାରିଲେ ସବୁ ଧରାପଡ଼ିଯିବ । ସତେ କି ସେ ଜାଣି ଶୁଣି ମୋର ସନ୍ଦେହପାଇଁ ଖୋରାକ ଖଞ୍ଜି ଦେଇଥିଲେ । ତୁମି ଦେଖୁ, ରାଗୁ । ତା'ପରେ ପୁଣି ଆରମ୍ଭ ହେବ ପାଷ୍ଟିରୁଣ୍ଡ, କାନ୍ଦକଟା, କ୍ଷମାଭିକ୍ଷା ଶପଥର ପାଲି । ଆରମ୍ଭ ହୋଇ ଶେଷ ହେବ । ଆମ ଦୁଇଜଣଙ୍କର ନାହିଁ ନଥିବା କଥାର ପ୍ରେମ ପ୍ରମାଣିତ ହୋଇଯିବ । ଶେଷ ହେବ....ପୁଣି ଥରେ ଆରମ୍ଭ ହେବାପାଇଁ ।

ଇଣ୍ଟେଲେକ୍‌ଚୁଆଲମାନେ କ'ଣ ସ୍ୱଭାବ ଠକ । ପ୍ରେମକୁ ପରଣୀତାକୁ ନିଜକୁ ଠକିଲେ ମଧ୍ୟ ଭାବନ୍ତି ଯେ ଏଇ ଶଠତା ତାଙ୍କର କପାଳ ଲେଖା ? ଦୁର୍ଭାଗ୍ୟ ? ଶପଥ ଭଙ୍ଗ କରି ଅନୁତାପରେ ଜଳିପୋଡ଼ି ମରିବା ତାଙ୍କର ଜନ୍ମଗତ ଅଧିକାର ?

ସ୍ମିତହାସର କ୍ଷୀଣ ରେଖାଟିଏ ସୁମତିଙ୍କ ଓଠରେ ଆଙ୍କି ହୋଇଗଲା । ତେବେ ସେଥିରେ ବିଦ୍ରୂପ ଥିଲପରି ଲାଗିଲା ନାହିଁ । ମନେ ହେଲା ଦମ୍ଭାରୁ ଘୃଣାଟିକ ଚାଲିଗଲାଣି ।

ମୋର ଏଇ ସ୍ୱାମୀ ଜଣକ···ଇଣ୍ଟେଲେକ୍‌ଚୁଆଲ୍ । ବିଚାର ।

ତଥାପି ସେ ନିଜ ସଙ୍କଳ୍ପରେ ଦୃଢ଼ ହୋଇ ରହିଲେ । ସେଆଡ଼କୁ ଚାହିଁଲେ ନାହିଁ ଭାବିଲେ ଶୋଇ ପଡ଼ିବ । କାଲି ସକାଳେ ପୁଅଝିଅ ଦୁଇଜଣ ଯାକ ସ୍କୁଲ କଲେଜ ଯିବେ । ପାହାନ୍ତିଆରୁ ଉଠି ମୋତେ କାମ କରିବାକୁ ପଡ଼ିବ । ଗୃହିଣୀର କାମ, ପିଲାଙ୍କ ମାଆର କାମ । ଇଣ୍ଟେଲେକ୍‌ଚୁଆଲ୍ ସ୍ୱାମୀମାନେ ସେଥିରୁ କ'ଣ ବୁଝିବେ ?

ତୁମେ ଯେତେ ଯାହା ଭାବୁଛ ଭାବୁଥାଅ, ଅତୀତକୁ ଭବିଷ୍ୟତକୁ ଜୁଳୁଜୁଳୁ ହୋଇ ଚାହୁଁଥାଅ । ତୁମ ସାଙ୍ଗରେ ମୋର କିଛି ସମ୍ପର୍କ ନାହିଁ । ମୁଁ ମୋର ଶୋଇ ପଡ଼ିବ । ଏମିତି ମନେ ମନେ କହି ସୁମତି ଆଖି ବୁଜିଲେ । ବିଜୁଳି ଆଲୁଅ ଜଳି ଜଳି ଗଲା ।

× × ହଠାତ୍‌ଟାଏ ସ୍ୱପ୍ନରେ ଓଲଟି ପଡ଼ିଲା ? ସେଥିପାଇଁ ମୋ ନିଦ ଭାଙ୍ଗି ଗଲା, ଛାତି ଦୁଲୁକି ଉଠିଲା ? ନା ସେ ମୋର ହାତ ଧରି ପକାଇଲେ ?

ତାଙ୍କର କି ଅଧିକାର ଅଛି ମୋର ନିଦ ଭାଙ୍ଗି ଦେବେ ? କେଉଁ ସାହାସରେ ?

ଉଁଃ, ଛାତିଟା କେତେ ଜୋରରେ ଦୁଲୁକି ଉଠିଲା । ହେଲେ ମୁଁ ଆଖି ଖୋଲି ନାହିଁ । କଦାପି ଖୋଲିବ ନାହିଁ । ହାତରେ ହାତ ଅଛି, ଥିଲେ ଥାଉ । କିଛି ଯାଏ ଆସେ ନାହିଁ ।

ସୁମତି, ସ୍ୱାମୀ ଜଣେ ତୋ'ର ପାଦ ଧରି କ୍ଷମାଭିକ୍ଷା କରିଥିଲେ । ତୁ ପ୍ରତ୍ୟାଖ୍ୟାନ କରିଛୁ । ଭଲ କରିଛୁ । ଏଇକ୍ଷଣି ନିଜ ହାତଟିକୁ ଘୁଞ୍ଚେଇ ଆଣି ପାରୁ ନାହୁଁ ?

ନା-ନା—ମୁଁ ଦୁର୍ବଳ ନୁହେଁ । ଅନୁକମ୍ପାରେ ଜଡ଼ସଡ଼ ହୋଇ ମୁଁ ମୋର ହାତକୁ ପକେଇ ରଖିଛି, ତାଙ୍କ କ୍ଷମାରେ ଛାଡ଼ି ଦେଇଛି ବୋଲି ଭାବ ନାହିଁ ।

ତାଙ୍କର ସ୍ପର୍ଶରେ ମୋର କଛି ଓଲଟ ପାଲଟ ହୋଇ ଯାଉନାହିଁ, ରକ୍ତରେ ନିଆଁ ଲଗୁନାହିଁ । ମୋର ଭଲ ପାଇବା ପାଉଁଶ ହୋଇଯାଇଛି ।

ସୁମି, ମୋ ସୁମି…

ପାଖରୁ ନୁହେଁ, ଅନେକ ଦୂରରୁ ଶୁଭୁଛି ଆଉ ଜଣକ କଥା, ଯାହାର ମୁହଁ ଜହ୍ନ ଆଲୁଅରେ ଧାଁସିଆ ଦେଖାଯାଏ । ମୁଣ୍ଡରେ ଗୋଛାଏ ବାଳ । ଆଣ୍ଠେଇବଡ଼ରେ କୃଷ୍ଣଚୂଡ଼ ଶୋଇଛି, ପୁଣି ଥରେ ମୃତ ସାଇଲାଣି । ମୃତଗନ୍ଧ ସାଙ୍ଗରେ ଖୋସାରୁ ଖସି ପଡ଼ିଥିବା ବକୁଳଫୁଲର ଗନ୍ଧ ମିଶିଯାଇ ଅପୂର୍ବ ଉତ୍କଟ ହୋଇ ଉଠିଛି । ମନେ ହେଉଛି ଯେ ଏଭଳି ରୂପରସଗନ୍ଧରେ ବାନ୍ଧ ହୋଇଥିବା ସ୍ୱାମୀ-ସ୍ତ୍ରୀ ପୃଥିବୀରୁ ଭିନ୍ନ—ଅଧରାତରେ ବଳବଳେଇଲା ପରି ମୋତେ କାହିଁକି ଡାକୁଛ କହିଲ ? ତୁହ, ମୁଁ ଟିକିଏ ପୁଅର କନ୍ଥା ବଦଳେଇ ଦିଏ ? ମତଲବ କଅଣ ଶୁଣେ ?

ପାଖରୁ ନୁହେଁ, ଦୂରରୁ ଶୁଭୁଛି । ସେ ଆଉ ଜଣେ । ମୁଁ ତାକୁ ଗେହ୍ଲାରେ ସ୍ୱକୁବାବୁ ବୋଲି ଡାକୁଥିଲି । ସେ ମୋର ସାଙ୍ଗଥିଲା । କାମନାରେ ଅସମ୍ଭାଳ ହୋଇ ରାତି ଅଧରେ ବଳବଳେଇଲା ପରି ଡାକିଲାବେଳେ ତା' ଉଚ୍ଚାରଣ ପ୍ରେମର କବିତାଟିଏ ଥିଲା । କେବଳ ମୋ ପାଇଁ । କାଲି ସକାଳେ ସେ ଲୁଚେଇ ଲୁଚେଇ ଶେଷ ଦୁଇଧାଡ଼ି ଲେଖିଦେଇ ଏକୁଟିଆ ମୋ ହାତକୁ ବଢ଼େଇ ଦେବ । ଗଳ୍ପଟିଏ ଦେଲାପରି ଗଦ୍‌ଗଦ୍ ହୋଇ କହିବ—ତୁମକୁ ଦେଲି । ତୁମେ ପଢ଼ିବ, ଆଉ କାହାକୁ ଦେଖେଇବ ନାହିଁ ।

ସେତେବେଳେ ସେ ମୋର କବି ଥିଲା । ଇଣ୍ଟେଲେକ୍‌ଚୁଆଲ ନଥିଲା । ବଡ଼ ପ୍ରଫେସର ହୋଇ ଫ୍ରଏଡ଼୍, ମାର୍କସ, ଉପନିଷଦ ଇତ୍ୟାଦି ବିଷୟରେ ଗୁରୁ-ଗମ୍ଭୀର ପ୍ରବନ୍ଧ ଲେଖୁ ନଥିଲା । ବହି ଛପେଇ ନଥିଲା । ଆଉ ଲୁଚେଇ ଚୋରେଇ ଆଉଜଣକ ପାଖକୁ ଯାଉ ନଥିଲା ।

ସୁମି, ମୋ ସୁମି, ମୋ ପାଖକୁ ଆସ…

ମୋତେ ଶୁଭୁନାହିଁ, ଦୂରରୁ ଶୁଭୁଛି, କ୍ଷୀଣରୁ କ୍ଷୀଣତର ହୋଇ ଆସୁଛି, କିଛି ସମୟ ପରେ ପୂରାପୂରି ହଜିଯିବ…

ମୋ ମୁହଁକୁ ହେଲେ ଟିକିଏ ଚାହଁ…

ନା, ସେଉଳକ କରବ ନାହିଁ, ମୋଟେ କରବ ନାହିଁ, ତୁମର ଝାଉଁଳା ମୁହଁକୁ ଦେଖି ମୁଁ ତରଳି ଯିବ ନାହିଁ । ଆଉ ନୁହେଁ, ଆଉ ନୁହେଁ······

କଳ୍ପନାଗତ କଥାବୃଷାର ଖିଅ ଛିଣ୍ଡିଗଲା । ସୁମତିଙ୍କର ମାଂସଳ ଗୌର-ବର୍ଣ୍ଣ ହାତ ଅସାଡ଼ ହୋଇ ପଡ଼ି ରହିଲା । ତା' ଉପରେ ସୁକାନ୍ତ ବାବୁଙ୍କର ଶ୍ୟାମଳ ଶିଥିଳହାତ । ସ୍ୱର୍ଗ···ସଂସାର···କିନ୍ତୁ ଉତ୍ତର କାହିଁ ? କିଏ ଦେବ ? ଶ୍ରୀମତୀ ସୁମତୀ ପଟ୍ଟନାୟକ ? ପ୍ରେମ ପାଉଁଶ ?

ଯାହା ହେଉ ସୁମତୀ ସ୍ୱାମୀଙ୍କ ମୁହଁକୁ ·ଦେଖିବାର ଆଶଙ୍କାରୁ ରକ୍ଷା ପାଇଲେ । ସୁକାନ୍ତ ବାବୁ ଆରହାତରେ ସୁଇଚ୍ ଟିପି ଦେଲେ । ଘର ଅନ୍ଧାର ହୋଇଗଲା । ନିବୁଜ ଅନ୍ଧାର । ମେଘୁଆ ଆକାଶରୁ ମଧ୍ୟ ଧାପେ ଆଲୁଅ ଆସୁ ନ ଥିଲା ।

ଅନ୍ଧାରକୁ ଜଣା ନଥିଲେ କଅଣ ହେବ, ଅନ୍ଧାର ଉପରକୁ ଦୀପ ଥାଏ ବୋଲି ସମସ୍ତେ ଜାଣନ୍ତି । ଦୀପରେ ଦୀପଶିଖା । ଲେଲିହାନ ଲସ୍ୟ ।

ସୁମତି ପ୍ରେମ ଅଛି ବୋଲି ମାନିଲେ ନାହିଁ । ସୁକାନ୍ତ ବାବୁ କାମନାକୁ ଅସ୍ୱୀକାର କଲେ କିନ୍ତୁ ତାଙ୍କ ହାତ ଚଞ୍ଚଳ ହେଲା, ସୁମତିଙ୍କ ଦେହକୁ ଖୋଜିଲା । ସୁମତି ବାରଣ କରି ପାରିଲେ ନାହିଁ ।

କଅଣ କରିବାକୁ ଚାହଁ, କର । ମୁଁ ବାଧା ଦେବି ନାହିଁ । ମୁଁ ନିର୍ବିକାର । ମୋର ସଂକଳ୍ପକୁ କେହି ଟଳାଇ ପାରିବେ ନାହିଁ । ମୁଁ ନିଜକୁ ନିଜ ସାଙ୍ଗରେ ବାନ୍ଧି ଦେଇଛି । ତା'ର ଗଣ୍ଠି ଖୋଲି ପାରିବା କାହାର ସାଧ୍ୟ ଅଛି ?

ସୁମତି ବାରମ୍ବାର ଦୀର୍ଘ ନିଶ୍ୱାସ ଛାଡ଼ିଲେ । ପ୍ରତ୍ୟୁତ୍ତର ଦେଲେ ନାହିଁ ।

କିନ୍ତୁ କ୍ରମଶଃ ତାଙ୍କର ମନେ ହେଲା ଯେ ତାଙ୍କର ଏଇ ବନ୍ଧାଛନ୍ଦା ଗୁଡ଼େଇ ହୋଇଯାଇଥିବା ଅସ୍ତିତ୍ୱ ତଳେଇ ଯାଉଛି, ଅଗାଧ ସମୁଦ୍ରରେ ବୁଡ଼ି ଯାଉଛି । ସତ ନା ସ୍ୱପ୍ନ ? କାଲି ରାତିରେ କଅଣ ଏଇ ସ୍ୱପ୍ନ ଦେଖି ନ ଥିଲି ? କେଉଁଠୁ ଏତେ ସମୁଦ୍ର ଆସିଲା, ଏତେ ପାଣି, ଏତେ ଗଭୀରତା ? କାହିଁ, ଚିତ୍କାର କରିବାକୁ ଇଚ୍ଛା ହେଉ ନାହିଁ ତ !

ତା'ମାନେ କଅଣ ଯେ ମୁଁ ଏଇ ତଳେଇ ଯିବା ବୁଡ଼ିଯିବା ଭୁଲିଯିବା ପଣକୁ ଉପଭୋଗ କରୁଛି ?

ହଁ, ଠିକ୍ ସେଇଆ । ମୁଁ ଭୁଲି ଯାଉଛି, କାହିଁକନା ଚେଉ, ଫେଣ, କାଠିକୁଟା, ମାଛ ମଗର କେହି ମୋତେ ବ୍ୟସ୍ତ କରୁ ନାହାନ୍ତି । କେବଳ ଯାତ— ତାଳ ପାଣି, ଗମ୍ଭୀରତା, ଅପ୍ରତିହତ ଅନୁଭବ ।

ଏଇ ଅଭିନ୍ନ ଅନୁଭବ ଆଣି ଦେଇଛି କିଏ ? ତୋ'ର ବ୍ୟକ୍ତିତ୍ୱ ସ୍ୱାମୀ ଜଣକ ?

ସୁମି, ତୋର କଅଣ ହୋଇଛି ? ତୁ ନିଜକୁ ଏତେ ଶ୍ରେଷ୍ଠ ସ୍ଥାନ କରି ଦେଉଛୁ କାହିଁକି ? ବେଳ ଥାଉଁ ଥାଉଁ ଉଠି ଯାଆ, ଛଟିପିଟି ହୋଇ ଉଠି ଯାଆ, ତୋ'ର ସ୍ୱାମୀକୁ ଠେଲି ଦେଇ ଶୁଖିଲା ଭୂଇଁକୁ ଉଠିଯା' ।

କିନ୍ତୁ ସୁମତି ବ୍ୟକ୍ତିତ୍ୱର ପ୍ରତ୍ୟେଦାନକୁ ଶୁଣିଲେ ନାହିଁ । ତାଙ୍କର ମନେ ହେଲା ଯେ ସେ ନିଜକୁ ଶ୍ରେଷ୍ଠ କରି ଦେଉ ନାହାନ୍ତି, ଆପଣାକୁ ଶ୍ରେଷ୍ଠ କରୁଛି ଏଇ ଲୋକଟି । ଯେ ଦେଉଛି, ଢାଳି ଦେଉଛି ତା'ର ସମସ୍ତ ଗ୍ଲାନି ଗ୍ଲାନି ପାପ ଗ୍ଲାନି...... ଯେପରିକି ଅବଶିଷ୍ଟ ରହିବ କେବଳ ପ୍ରେମ । ଅନାବିଳ ଅବିଚ୍ଛେଦ୍ୟ ପ୍ରେମ ।

ଅସମ୍ଭବ ! ପ୍ରେମ ପଦଟି ମନକୁ ଆସିବାରୁ ସୁମତି ଚହଙ୍କି ଉଠିଲେ । ଯାହା ହେବାର ହେଉ ପଛେ, ସେଇ ଜିନିଷଟି ନାହିଁ । ମୁଁ ତାକୁ ଆସିବାକୁ ଦେବି ନାହିଁ । ମୋର ପ୍ରେମିକ ସୁକୁବାବୁ କେବେଠୁଁ ବିଦାୟ ନେଲେଣି । ମାନନୀୟ ସୁକାନ୍ତ ବାବୁ ଜିନ୍ଦାବାଦ୍···

ହେଲେ ସେତେବେଳକୁ ଉଚ୍ଛୁର ହୋଇ ଗଲାଣି । ସୁକାନ୍ତ ବାବୁ ମୋ ସୁମି, ମୋ ସୁମି ବୋଲି କହି ତାଙ୍କର ଶେଷ ନିର୍ଯ୍ୟାସ ନିବେଦିଲେ ଓ ସ୍ତ୍ରୀଙ୍କୁ ନିବିଡ଼ ଭାବରେ କୁଣ୍ଢେଇ ଧରିଲେ ।

ସୁମତି ମନେ ମନେ କହି ଚାଲିଲେ— ମୋର କିଛି ବଦଳି ନାହିଁ, ବଦଳି ପାରିବ ନାହିଁ.........

ସୁମତି ସଂକଳ୍ପକୁ ମୁଠେଇ ଧରିଲେ । କିନ୍ତୁ ସହସା ଜାଗି ଉଠିଥିବା ଏକ ଅଦମ୍ୟ ଇଚ୍ଛାକୁ ଦବେଇ ଦେଇ ପାରିଲେ ନାହିଁ । ଉଠିପଡ଼ି ସୁଇଚ୍ ଟିପି ଘରକୁ ଆଲୁଅ କରିଦେଲେ । ସ୍ୱାମୀଙ୍କର ମୁହଁକୁ ଦେଖିଲେ ।

"କ'ଣ ଦେଖୁଛ ?"

"ଦେଖୁଛୁ ।" ସୁମନଙ୍କ ପାଟିରୁ ବାହାରିଲା । କାରଣ ସେଇ ଜଣାଶୁଣା ମୁହଁଟିରେ ସେ ନୂତନତମ ଆଶ୍ଚର୍ଯ୍ୟର ଆବିଷ୍କାର କଲେ, ଯାହାକୁ ସେ କଳି ପାରିଲେ ନାହିଁ । ଯାହାର ପରିଚୟ ପାଇବା ପାଇଁ ସେ ଅପଲକ ନୟନରେ ମୁହୂର୍ତ୍ତରୁ ମୁହୂର୍ତ୍ତ ଦେଖି ବସିଲେ ।

ଇଏ କାହା ମୁହଁ ? ଯାକୁ କ'ଣ ମୁଁ ଆଗରୁ କେବେ ଦେଖିଥିଲି ?

ଶ୍ରାନ୍ତ, ବିଧ୍ୱସ୍ତ···ସକରୁଣ ? ନା, ନା, କେବଳ ତା' ନୁହେଁ ଯେ ମୋ ପୁରୁଣା ସୁକୁବାବୁର ମୁହଁ ? ନା, ତା' ମଧ୍ୟ ନୁହେଁ । ମୁଁ ଯାକୁ ଆଗରୁ ଦେଖି ନଥିଲି, ବୋଧହୁଏ ତାଙ୍କର ମାଆ ଦେଖିଥିଲେ···

ଇଚ୍ଛା ହେଉଛି ଏଇ ଅଦୃଷ୍ଟପୂର୍ବ ମୁହଁକୁ ଦୁଇ ହାତରେ ଟେକି ଧରିବି । ମନଭରି ପ୍ରେମର ଚୁମ୍ବନଟିଏ ଦେବି···ଓ ତା'ପରେ ତାକୁ ଛିରି କରିଦେବି । ନ ହେଲେ ସେ ନଷ୍ଟ ହୋଇଯିବ । ଏଇ ନବୋଧ ଶିଶୁ ଯେ ପାପ କରିପାରେ ନାହିଁ, ପାପ କାହାକୁ କହନ୍ତି ବୁଝି ପାରେ ନାହିଁ, ତାକୁ ମୁଁ ସବୁଦିନ ପାଇଁ ଅଜର କରିଦେବି; ମାରି ଦେବି ।

ସୁକାନ୍ତ ବାବୁଙ୍କର ଅନାବଶ୍ୟକ ପ୍ରଳାପ ଶୁଭୁଥାଏ—ସୁମି, ସତରେ ତୁମେ ମୋତେ ବଞ୍ଚେଇ ଦେଇଛ ।



# ଦଶରାରୁ ଦଆଳି ଯାଏଁ

ମୋର ଏମିତ କେବେ ହୁଏ ନାହିଁ, ମାନେ କେତେବେଳେ କେମିତି ମଝିରେ ମଝିରେ ହୁଏ (ମାଝା ବଢ଼ିଗଲାଣି), ମାଝା ବଢ଼ି ନାହିଁ, ମୁଁ କଅଣ ବୁଢ଼ା ହୋଇ ଗଲିଣି ଯେ କହିବ···

"ପଥରକଟା ମୂର୍ତ୍ତି ଯେମିତ ସମୟର ପାଣି ପବନରେ ଚକ୍‌କଣ ହୋଇ ଆସେ"

"ସୁନାଚୂଡ଼ି ଦେହ ଲଗା ହୋଇ ସାଉଁଳିଆ ହୋଇ ଆସେ"

"ମଦ ପାକଲ ହୁଏ"

ଅଶୋକ ଇନ୍‌ଷ୍ଟିଚ୍ୟୁଟ୍‌ର ତରୁଣ ତରୁଣୀ ମାନେ ମୋର ଅର୍ଥାତ୍ ତାଙ୍କ ଭାଇସାହେବଙ୍କର ଥର ବୟସକୁ ନେଇ ଏମିତ କେତେ ଉପମା ଦିଅନ୍ତି । ମୁହଁରେ କୁହନ୍ତି, ଶୁଣେଇ ଶୁଣେଇ କୁହନ୍ତି, ମନେ ହୁଏ ସଳପୁଭର ହୋଇ ଜାଣି-ଶୁଣି କହୁଛନ୍ତି, ସତେକ ମୋ ମନରେ ସନ୍ଦେହ ଉଙ୍କି ମାରୁଛି । ଆଜି ନୁହେଁ, ଦଶବର୍ଷ ପୂର୍ବରେ ମଧ୍ୟ କହୁଥିଲେ । ଦଳକୁ ଦଳ ଆସିଛନ୍ତି, ସେଇ ଏକା ଗୀତ ଗାଇଛନ୍ତି । ଆମ ଭାଇ ସାହେବ ପ୍ୟାରୁ ଭାଇସାହେବ ଦିନକୁ ଦିନ ସବୁଦିନର ହୋଇଥିବେ, ଚହଟିବେ ନାହିଁ କି ମଉଳିବେ ନାହିଁ, ନରମରୁ ନରମ ଚକ୍‌କଣରୁ ଚକ୍‌କଣ ହୋଇ ରହିବେ । ହୋଇ ରହିବେ, ମରିବେ ନାହିଁ । ମରିବେ ନାହିଁ ! ବାଃ ବାଃ, ତାଳି ମାର, ମୋର ପ୍ରିୟ ଭକ୍ତମାନେ କେଡ଼େ ବୁଦ୍ଧିଆ, କେଡ଼େ ସତଆ ।

ନା, ସହି ହେଉ ନାହିଁ । ମୋ ବୟସ ସାଙ୍ଗରେ କିଛି ଯାଏ ଆସେ ନାହିଁ । କଥା ହେଉଛି ଯେ ମଉଛବ ଆନନ୍ଦରେ ଦିଲ୍ଲୀର ଜନତା, ପୁରୁଷ ସ୍ତ୍ରୀ, ପିଲାଛୁଆ, କାର୍ ସ୍କୁଟର, ମାଇକ୍ରୋଫୋନ, କୁକୁର ସମସ୍ତେ ମିଶି ଗୁଡ଼ାଏ ବେଶି ପାଟି କରୁ-ଛନ୍ତି । ରାତକୁ ଚଉ ବଢାଉ ପାଟି କରୁଛନ୍ତି ।

ଯେତେକ ଧ୍ୱନି ଏକାଠି ହୋଇ ଯାଆନ୍ତେ, ଭଲ ! ଏକାଠି ହେବେ ନାହିଁ, ଗୋଟି ଗୋଟି କରି ଗାଉ ଟାଣିବେ । ଖୋଲିଲ ପରେ । ଧାଉଡ଼ିଆ ଦୁଇ

ବଖୁରିଆ ସରକାରୀ ଘର ଭିତରୁ ଗୋଟିକରେ ସେଇ ଯେଉଁ ବଙ୍ଗାଳୁଣୀ, ଶ୍ୟାମଳା ମାଂସଳା ମୋଟା ଓଠ ବଙ୍ଗାଳୁଣୀ । ସେଇ ନିଶ୍ଚୟ ହସୁଛି । କାହା ଦେହରେ ବାଜିଲା ? ସ୍ୱାମୀ, ପୁଅ, ଦିଅର ନା ଆଉ କିଏ ?···ପିଁ-ପିଁ-ପିଁ-ଇଁ-ଇଁ-ଇଁ । କିଏ ଏମିତି ଅସମ୍ଭାଳ ହୋଇ ପଳେଇ ଯିବାକୁ ବସିଛି ? କୁଆଡ଼େ ଯିବ ? କାହାକୁ ନେଇ ଧନ୍ଦ କରିବ ? ଜଣେ ସର୍ଦ୍ଦାରଙ୍କୁ ସରୋଜିନୀ ମାର୍କେଟ୍‌ରେ ଦେଖିଥିଲି, କାଟର୍ ହାଣ୍ଡିକୁ ଚପି ଚାଲିଥିଲେ । ସେତିକ ପୃଥିବୀର ଦୁଇବର୍ଷ ଦୈନ୍ୟକୁ ଚପୁଛନ୍ତି, ସେଇ ମଜା, ଯିବା କଥା ମିଛ । ସେଇମାନେ । ରାସ୍ତା ମଝିରେ ଅଟକି ଯାଇ ପିଁ ପିଁ କରୁଥିବେ । ଚପୁଥିବେ, ଖୋଜୁଥିବେ ।··· ମାଇକ୍ରୋଫୋନରେ, 'ଟେଷ୍ଟିଙ୍ଗ୍ ଟେଷ୍ଟିଙ୍ଗ୍' ପରେ କୁହାଟ କାହିଁକି ? କେ, ଡ଼ି, ନଗରର ତରୁଣତମ ଯୁବକର ପାଟି । ମାଇକ୍ରୋଫୋନ ଚାଲୁ ହୋଇଗଲାଣି, ଏହାପରେ ଶବ୍ଦର ସୁଅ ଅଜାଡ଼ି ହୋଇଯିବ, ଏଇ ଆନନ୍ଦରେ ହାବୁକାଏ ହସରସ ଛୁଟି ଦେଲା ? ଛୁଟି ଦେଇ କଣ ପାଇଲା ? କାହାକୁ ପାଇଲା ? କୁକୁର-ମାନେ ଭୁକୁଛନ୍ତି । ଏକାଠି ନୁହେଁ, ଜଣକ ପରେ ଜଣେ । ସେମାନଙ୍କୁ ମଧ୍ୟ ଖୋଲିବା ପାଇଁ କୁହା ହୋଇଛି । କୁକୁରମାନଙ୍କ ଦେହରେ ମଧ୍ୟ ରକ୍ତ ଅଛି, ଦେଲନେଲା ଉଚ୍ଛନ୍ନପଣ ।···ଭେଁ-ଏଁ-ଏଁ ତା'କୁ ତା'ର ଭାଗ ଦିଅ ହୋଇଛି, କହୁଛି, ମୁଁ ଏଇ ଉତ୍ସବରୁ ଜଣେ । ମୁଁ ସାନ ବୋଲି ମୋତେ ପିଠି କରି ମଉଜ କରିବ, ସେ କଥା ହେବ ନାହିଁ । ମୁଁ ତମ ଭିତରେ ପଶିବ, ଠେସି ହେବ । କମଳ ସିନେମା ପାଖରେ ଦେଖିଥିଲି ମାନ୍ଦ୍ରାସୀ ବାପ ତା' କାନ୍ଧର ପିଲାକୁ ଭୁଲେଇବା ପାଇଁ ଗୋଟାଏ ବେଲୁନକୁ ପ୍ରାଣପଣେ ଫୁଙ୍କି ଚାଲିଥିଲା, ଏଣେ ମାଆ ପିଲାର ତଣ୍ଟିରେ ହାତ ପକେଇ ତାକୁ ଧମକଉଥିଲା···ହିଁ-ହିଁ-ହିଁ-ଇଁ-ଇଁ-ଇଁ··· ସବୁରି ଉପରେ ସେଇ, ଜନ୍ମଗ୍ରୁରୁ ହିଁଙ୍କାର, ଯେତେକ ଶବ୍ଦ ଉପରେ ହିଁ ମାରି ଦେଇ ଯାଉଛି, କହୁଛି ସବୁ ସମାନ, ଆତ୍ମୀୟତାର ଶବ୍ଦ ।

ହିଂସା । ଉଲ୍ଲାସ ଯାହା ଯନ୍ତ୍ରଣା ସେଇଯା । ସେମାନେ କାହିଁକି ଏମିତି ହୁଅନ୍ତି ? କଅଣ ପାଆନ୍ତି ?

ହେଲେ ହୁଅ, ମୋତେ ଏମିତି ହଇରାଣ କର ନାହିଁ । ମୁଁ ମୋର ସୁଖରେ ଅଛି । ମୋର କାନ ପାଖରେ ଆଖି ଆଗରେ ପାଟି କରି ଭେଲିକି ଦେଖାଇ ମୋର ନିଦକୁ ଭଗେଇବ ବୋଲି ମନେ କର ନାହିଁ (ମୁଁ ରାଗେ ନାହିଁ, ଶୋଭନା ଦେଶାଇ ମୋଟା କଜଳ ଆଖିରେ ଆହୁରି ଆହୁରି ଆଶ୍ଚର୍ଯ୍ୟ ହେଲାପରି ପଚାରିଲା-ଭାଇସାହେବ, ତୁମେ କଣ ଦେବତା ନା କ'ଣ ମ ? ମୋଟେ ରାଗ

ନାହିଁ ? କେବେହେଲେ ରାଗ ନାହିଁ ?) ମୋ ନଦର କିଛି ହେବ ନାହିଁ । ସାମାନ୍ୟ ଛଟପଟ ହେବ, ଚହଲି ଯିବ, ପୁଣି ସ୍ଥିର ହୋଇଯିବ । ମୋ ନଦର ତୁଳନା ନାହିଁ ।

କେବଳ ଏଇ ଦଶରା ଦେଇଟା ଦନ ରହି ଯାଉ । ଆର ବର୍ଷକୁ ଏଠି ନ ଥିବ । ଖବୁଛି କେ ଡ଼. ନଗର ଛାଡ଼ି କୁତୁବ୍ ଅଞ୍ଚଳକୁ ପଳେଇବ । ଦୂର ହେଲେ ହେଉ, ସେଠିକି ଦଶରା ଶୁଭିବ ନାହିଁ ।

କୃଷ୍ଣଦେବରାୟ ନଗର ନୂଆଦିଲ୍ଲୀର ନୂଆ କଲୋନି ମାନଙ୍କ ମଧ୍ୟରୁ ଅନ୍ୟତମ । ଦକ୍ଷିଣ ଭାରତର ଇତିହାସରେ ଜାଜ୍ୱଲ୍ୟମାନ ଏକ ରାଜାଙ୍କର ନାମ ବହନ କରୁଛି । ବହନ କରିବାକୁ ପଡ଼ିଲା କାରଣ ମ୍ୟୁନିସିପାଲ୍ କମିଟିରେ କଥା ଉଠିଲା ଯେ ରାଜଧାନୀର ରାସ୍ତା ଘାଟରେ ଦକ୍ଷିଣ ଭାରତର ସ୍ୱାକ୍ଷର ନାହିଁ । ତେବେ କଲୋନିର ଅଧିବାସୀମାନଙ୍କୁ କୃଷ୍ଣଦେବରାୟ କିଏ ବୋଲି ପଚାରିଲେ ଉତ୍ତର ମିଳେ—ଜଣେ ପୁରୁଣା ରାଜା, ଦିଲ୍ଲୀର ଅନେକ ଉନ୍ନତି କରିଛନ୍ତି । କିଏ କୁହେ ରାଜା ନୁହେଁ, ବ୍ରିଟିଶ୍ ଅମଳର କମିଶନର । ଟୋକା ଟାକଲିଆ କାହିଁ କୁଝେଇ କୁହନ୍ତି—କେଜାଣି, ସମ୍ ଓଲ୍ଡ୍ ଫେଲୋ । ଅବଶ୍ୟ କେ. ଡ଼. ର ଅର୍ଥ କମଳା ଦାସ ଅଥବା କାନ୍ତି ଦେଶାଇ ବୋଲି କାହାରି ଭୁଲ୍ ଧାରଣା ହୁଏ ନାହିଁ । କଲୋନିର ଆଗରେ ପଛରେ ଆଖିଦୁରୁଶିଆ ଅକ୍ଷରରେ ସମ୍ପୂର୍ଣ୍ଣ ନାମ ଲେଖା ହୋଇଛି, କାହାରି ଆଖିରେ ନ ପଡ଼ିବ ନାହିଁ ।

ଇତିହାସପ୍ରେମି ଅମ୍ବିକା ପ୍ରସାଦ ବନାମ ଖଇ ସାହେବ ନାଆଁକୁ ଦେଖି କେ ଡ଼ ନଗରରେ ବସା ବାନ୍ଧି ନାହାନ୍ତି । ତାଙ୍କୁ ଭଲ ଲାଗିଲା । ଭଲ ଲାଗିବାର ପ୍ରଥମ କଥା ଘର ମାଲିକର ଟିକି ଝିଅ ପ୍ରୀତିର ଭୂରୁ କୁଞ୍ଚା ପ୍ରଶ୍ନ— ଇଏ ଭଣ ଗୋଟାଏ ବାବାଜୀ ? ତାକୁ କୋଳରେ ବସେଇ ମନେଇବାକୁ ଇଚ୍ଛା ହେଲା । ତା'ଛଡ଼ା ଗ୍ରୀଉଣ୍ଡ ଫ୍ଲୋର ବର୍ଷାତିର ବିଶେଷ ଆକର୍ଷଣ । ଘର ଗୋଟିଏ ବଖରାରେ ସୀମିତ ହେଲେ ମଧ୍ୟ ଗ୍ରୀଜ ପ୍ରଶସ୍ତ । ମୁକୁଳା ଆକାଶକୁ ପାଇବାରେ ବାଧା ବନ୍ଧ ନାହିଁ ଏବଂ ଫାଟକ ପାଖରେ ଘର ମାଲିକର କାରଗୁ ଗଳୁଥିବା ତେଲରେ ଗ୍ରଉଗ୍ରଉକା ଚଟାଣ ଉପରେ ଗଙ୍ଗଶିଉଳିର ଉଦାର ଗୃଦର ।

ଆଜଯାଏଁ ସେ ଘର ବଦଳେଇବାକୁ ମନ କରି ନ ଥିଲେ । କିନ୍ତୁ ଘରମାନଙ୍କ ଶିଖର ଉପରେ କଙ୍କି ପରି ଡେଣା ମେଲି ବସିଥିବା ଟେଲିଭିଜନ୍ ଏରିଏଲ୍ କେବେହେଲେ ଏମିତି ଲଙ୍ଗଳା ହୋଇ ବସିବାର ଦଶୁ ନ ଥିଲେ । କେତେ

ଟିକି ଟିକି ଚଢ଼େଇ ସେଥିରେ ଆସନ ପାଠ ଆରମ୍ଭ କରୁଥିଲେ, ଧ୍ୟାନ କରୁଥିଲେ, ଗେଲ୍ହାରେ ଖମା ଖମି ହେଉଥିଲେ । ଆଉ ଗଙ୍ଗ ଶିଉଳି ମାନେ ଏମିତ ମନ୍ଦ ମନ୍ଦ ବାୟୁ ନ ଝଲେ । ଶବ୍ଦମାନେ ଆସିବୁ ଆସିବୁ ଆତୁର ପାଖକୁ ଆସିବୁ ବୋଲି ଧମକଉ ନ ଥିଲେ ।

ଅମ୍ବିକା ପ୍ରସାଦ ତାଙ୍କର ଲମ୍ବା ଗେରୁଆ କୁର୍ତ୍ତା ଦେହରେ ଗଳେଇ କାନ୍ଧରେ ଝୁଲିମୁଣି ପକେଇ ରାସ୍ତାରେ ବୁଲିବା ପାଇଁ ବାହାରଲେ । ସତେକି ଏଇ ବଡ଼ନ୍ତା ହିଂସାର ଶବ୍ଦମାନଙ୍କ ପାଖକୁ ଯାଇ ଥାଉ ବୋଲି କହିବେ । ଅବଶ୍ୟ ତାଙ୍କର ଉଦ୍ଦେଶ୍ୟ ଥିଲା ପ୍ରଥମେ ଚଳ ଘରକୁ ଯାଇ ପ୍ରୀତିକୁ ଖୋଜି ଆଣିବେ । ମେଣ୍ଟଢ଼ ଟୋକା, ତା'ର ଅସଭ୍ୟ ଉତ୍ସବ ସାଙ୍ଗରେ ସମ୍ପର୍କ କଅଣ ? ଘରେ ଅଛୁ ନା ବାହାରେ ବୁଲୁଛୁ ? ଯେଉଁଠି ଥାଉ ମୁଁ ତାକୁ ଉପରକୁ ନେଇ ଆସି ତାର ଦେଖେଇବ । ଭାଗ୍ୟ ଭଲ ଥିଲେ ଲୁସିଲା ତାର ଆଖିରେ ପଡ଼ିବ ଆଉ ସେ ମୋତେ ଚୁମା ଦେବ । ସେଇଆ ସର୍ତ୍ତ ହୋଇଛୁ ।

ପ୍ରୀତି ମୋ କୋଳରେ ବସେ, ଦେହରେ ଗୁଡ଼େଇ ହୁଏ, ମୋତେ ଗେଲ୍ହା କରେ । ଆମ୍ବୀସ୍ବତା ଛୁଏଁ, ବାସି ଉଠେ, ପାଟିକରେ, (ମହା ପାଜି) ବେଳେ ବେଳେ ରଖେଇ ଥୋଇ ଦିଏ ନାହିଁ । କଳୁ କାହିଁ, ବନ୍ଧ ଉଠେ ନାହିଁ ତ ? ମୋ କଦକୁ ଏମିତ ରଗାଏ ନାହିଁ ତ ?

ଅନ୍ୟମାନଙ୍କର କଅଣ ଅଛୁ ଯାହା ପ୍ରୀତିର ନାହିଁ ? ଧର ଶୋଭନା···

ସେତେବେଳକୁ ଶୋଭନା ଦେଶାଇ ବଂଗାଳି ମାର୍କେଟରେ ରାସ୍ତା କଡ଼ରେ ଛିଡ଼ା ହୋଇ ଆଳୁଟିକିଆ ଖାଉଥିଲା । ଆଳୁକୁ ବଦଳ ପୋଦନା-ଟମାଟୋ ଚଟଣିରେ ଗୋଳେଇ ସୁ' ସା' ଶବ୍ଦ କରି ଖାଉଥିଲା । ତଥାପି କଳା ମସଲି କ୍ରୁକ୍ଟୁ "ଗ୍ରେଲେ"ର ସମ୍ଭାର ଉପରେ ସଜା ହୋଇଥିବା ଶାଗୁଆ ଲଙ୍କା ମରଚକୁ ଦେଖି ଲୋଭ ହେଉଥିଲା । ସ୍ବାକୁ ବ' ଖାଇବ । ତା'ପରେ ଗୋଟାଏ ପ୍ଲେଟ୍ କୁଲ୍ଫି । ବେଶିକର ମଲଇ ତ ନା ଖାଇବ ଯେ ଦିନ ଦୋଷ ଗୁଳିଯିବ । କାହିଁକି ନ ଖାଇବ ? ···ତା'ଛଡ଼ା ଆଉ କଣ କରିବ ?

ରହା ଶାହା କେତେବେଳଠୁଁ ଖାଇସାର ଅପେକ୍ଷା କରୁଛୁ । କସ୍ତୁରୀ ରଙ୍ଗନାଥନ୍ ବାରମ୍ବାର ଚେତାଇ ଦେଲିଣି ଯେ ସାତଟା ବାଜି ଗଲାଣି, ସାଢ଼େ

ସାତଟା ମଧ୍ୟରେ ନ ପହୁଞ୍ଚିଲେ ସିତାର ଶିଖା ଗଣ୍ଡଗୋଳ ହୋଇଯିବ । କେବଳ ବସୁ (ବସୁନ୍ଧରା) ମହାଳ୍ପ ତା'ର ବିସ୍ମୃତ କରବଚ୍ଛିନ୍ନହସର ଚେହେରା ଦେଖାଇ ଶୋଭନା ସାଙ୍ଗରେ ଅନ୍ଧାର ଖାଇବାକୁ ପ୍ରସ୍ତୁତ ହୋଇ ରହିଛ । ବସୁର ବାହାଘର ଠିକ୍ ହୋଇଗଲାଣି ସେଇଲାଗି । ପାଇ ସାରଲାଣି, ତେଣୁ କେଉଁଥିକ ଆପତ୍ତି ନାହିଁ । ଶୋଭନା, ଜୁଲ୍ଫ, ସମସ୍ତର ଗଢ, କେଉଁଥିକ ପରୁଆ ନାହିଁ । ସବୁ ତା'ର ମୋଟା ତୃପ୍ତିର ଚକାରେ ଚପି ଚକଟି ହୋଇଯିବ, ଯଥା ଯୋଡ଼ପଲଙ୍କର ଗ୍ଲାରପୋକ, ମଲ୍ଲିଫୁଲ । ଶୋଭନା ଘୃଣା କରିବା ଉଦ୍ଦେଶ୍ୟରେ ଦେହକୁ ଶିହରେଇଲ ।

କାହାକୁ ଭଲ କହିବ ? କସ୍ତୁରୀର ସିତାର କାରବାର ମୁଁ ଜାଣିଛ । ଆଲାପ ସବଦା ଆଗରୁ ପ୍ରେମାଲାପ ଆରମ୍ଭ ହୋଇଯାଏ, ମୁଁ ସବୁ ଶୁଣିଛ । ସେଇଲାଗି ଲରତର ହେଉଛ । ସଙ୍ଗୀତ ମଉ଼ଉଛ । ରତ୍ନାଙ୍କ କଥା ଗ୍ଲଡ଼, ସେ ହେଉଛନ୍ତି ମୋର ନିଜ ଲୋକ । ମୋର କେଉଁ ଅଦୃଶ୍ୟ ଅଜ୍ଞାତ ମାଉସୀଙ୍କ ଝିଅ । ତାକୁ କୁହା ହୋଇଛ ମୋତେ କୁହା ହୋଇଛ ଯେ ଦଲ୍ଲୀ ସହରରେ କେତେ-ବେଳେ କେଉଁ କଥା, ନିଜଲୋକ ସାଙ୍ଗରେ ସଂପର୍କ ରଖିବ, ବିପଦବେଳେ ଆଖ କେବି ପିଠିରେ ପଡ଼ିବ ନାହିଁ । ସେମାନେ ଜାଣନ୍ତି ନାହିଁ ଯେ ଦେ ମୂଳରୁ ମେର କେବି ପିଠିରେ ପଡ଼ିଛ, ଓହ୍ଲେଇବାକୁ ନାରାଜ । ନୂଆଦିଲ୍ଲୀର ବର୍ଣ୍ଣମାଳା ଶିଖିପାରିଲି ନାହିଁ, ତେଣୁ ମୁଁ ଯାହା କରିବ ସେଇଆ କରିବ । ମୁଁ ଯାହା ଖାଇବ ସେଇଆ ଖାଇବ, ଭଲ ବୋଲି କହିବ । ପଞ୍ଜାବୀ ଛୋଲେ ହେଉ କି ମୋଗଲାଇ ହେଉ, ପିଜା ନା ହେଉ । ମୋ ପରି 'ମଉ୍' ଜିନ୍ ପିନ୍ଧିବ ବୋଲି ବସିଛ, ତା'ର କାଠି ବେହେରାକୁ ଯାହା ଦେଖାଯିବ ଭଗବାନ୍ ଜାଣନ୍ତି । ମୋର ଧାରଣା ମୁଁ ଯଦି କୁହେ, ରତ୍ନା, ଆଗରେ ସେଇ ସେଉଁ ଦାଢ଼ିଆ ଆସୁନାହିଁ, ସେ ଜଣେ ବିରାଟ ଇଣ୍ଟେଲେକ୍ଚୁଆଲ୍ ମୁଁ ତାକୁଇ ବାହାହେବ, ରତ୍ନା ବୋଧହୁଏ ଦଲ୍ଲୀର ଅନ୍ୟତମ ଦାଢ଼ିଆକୁ ଖୋଜି ବୁଲିବ । ତାହା ହେଲେ ହୁଏତ ମୁଁ ତା'ଠାରୁ ମୁକ୍ତି ପାଇବ ।

ମୁକ୍ତି ପାଇବ ନାହିଁ । ଆହୁରି ଅଲେଡ଼ା ଏକୁଟିଆ ହୋଇ ପଡ଼ି ରହିବ ।

କାହିଁକି, କାହିଁକି ଏମିତି ହେଲା ? ମୋର ମନଲାଗି ମୋର ପରି ଆଧୁନିକ ବୁଦ୍ଧି ଶରୀରବାଲା କେତେ ସାଙ୍ଗ ଥିଲେ, ନୂଆଦିଲ୍ଲୀର ରାଜପଥ ଜନପଥରେ ଗ୍ଲଡ଼ଫୁଲେଇ ବୁଲୁଥିଲେ, ଏଇ ଆମ ଜୀବନର ରାଜଧାନୀ, ଏଇଠି ଆମର ରସର୍ଚ୍ଚ, ରେସ୍ତୋରାଁ, ମୁକ୍ତି, ପ୍ରଗତି ବୋଲି କହି ହେଉଥିଲେ···କୁଆଡ଼େ ଗୋଟି ଗୋଟି ହୋଇ ଖସି

ଚାଲିଗଲେ ? ଅଧିକାଂଶ ବାହା ହୋଇ ପଡ଼ିଲେ । କଏ କହିଲା ପ୍ରେମ । କଏ କହିଲା ମାଆର ଲୁହ । କଏ ସଗର୍ବରେ ନୂଆ ପିନ୍ଧିଥିବା ସୁନା ଗହଣାର ଚେହେରା ଦେଖାଇଲା, ସତେକି ସୁନାରଙ୍ଗ ଠାରୁ ରଙ୍ଗ ନାହିଁ । ଯେତେକ ପୁରୁଷ ବକଲା ଜନ୍ତୁ ! ଅସଲ କଥା ସେଇୟା ! ଯେଉଁମାନେ ବାକି ରହିଗଲେ, ଟାଇପ୍ କରୁଛନ୍ତି, ପାଠ ପଢ଼ାଉଛନ୍ତି, ଝିଆର ଶିଖୁଛନ୍ତି, ସେମାନେ ମଧ୍ୟ ସେଇଥିପାଇଁ ଟାକି ବସିଛନ୍ତି, ସେଇୟା, ସେଇୟା !!

ଶୋଭନା ନାନଗ୍ରେଙ୍କେ ଗ୍ଳୁଲେଇ ଗ୍ଳୁଲେଇ ସମସ୍ତ ସଙ୍ଗିନୀ ମାନଙ୍କ ଉଦ୍ଦେଶ୍ୟରେ ଅଶ୍ଳୀଳ ସର୍ବନାମ ଉଚ୍ଚାରଣ କଲା ପରି ମନେ ହେଲା । ଖାଇବାର ଶବ୍ଦରେ ଅପମାନର ଧୂଆଁଧୂଆଁ ମିଶେଇ ଦେଲା । ଯାଅ ଏଠୁ ପଳେଇ ଯାଅ, ସେଇୟା କରିବ ଯାଅ । ମୁଁ ଆହୁରି ଖାଇବି, ଏଠି କାମ ସାରି ମୋଡ଼-ମହଲକୁ ଯିବି, ତନ୍ଦୁରି ଚକେନ୍ ଖାଇବି···ଖାଇବା ଲୋଭରେ ଲଜ୍ଜା ନାହିଁ । ସେଥିରେ ନିଜତ୍ୱ ନାରୀତ୍ୱ ନଷ୍ଟ ହୁଏ ନାହିଁ ।

"ତୁମେ ସବୁ ଯାଅ, ମୋର ଆହୁରି କେତେ କାମଅଛି, ମୁଁ ପରେ ଯିବି ।"

ରତ୍ନା କ୍ଷୁଣ୍ଣ କ୍ଷୁଣ୍ଣ ହେଉଥିଲା, କିନ୍ତୁ ତାକୁ ମଧ୍ୟ ଯିବାକୁ ପଡ଼ିଲା । ବସୁ ତା'କୁ କେଉଁଥି ପାଇଁ ଆଖି ଠାରିଲା ବୁଝି ହେଲାନାହିଁ । ସେମାନେ ଚାଲିଗଲା ପରେ ଶୋଭନା ହାଲୁକା ପବନରେ ଝାଡ଼ିହୁଡ଼ି ହେଉଥିବା ଓସ୍ତାଛମାନଙ୍କୁ ବିସ୍ତାର ଚଉମୁହାଣି ଗୋଲେଇ ମଝିରୁ ଉଠିଥିବା ନଗର ପାଳକାର ସ୍ତମ୍ଭକୁ, ଦୂରରେ ଦିଶି ଦିଶୁ ନ ଥିବା ନାଡଶୀତୋଷ୍ଣ ଆଭିନୟମାନଙ୍କୁ ପଚାରିଲା—

ତୁମମାନଙ୍କର ନୁଆଦିଲ୍ଲୀ କଣ ସତ ?

କେଉଁ ପୁରୁଣାର ନୂଆ, କେଉଁ ଅନ୍ଧାରର ଆଲୁଅ, କେଉଁ ଦଗଲ୍ପର । ଗୀତ ?

ମୁଁ ବୁଝି ବରୁଣ କେତେ ଅଣା କରି ମଡ଼୍ ହୋଇଛୁ । ନୂଆଦିଲ୍ଲୀର ନୂତନ ସମାଜରେ ଯୋଡ଼ି ହୋଇ ଯାଇଛୁ, ଯେଉଁଠି ମରାଠୀ, ଗୁଜୁରାଟୀ, ପଞ୍ଜାବୀ, ବଙ୍ଗାଳୀ, ଓଡ଼ିଆ, ତାମିଲ ତେଲୁଗୁ, ଶିକ୍ଷିତ ଉଚ୍ଚମନା ବାପାମାଆଙ୍କର ଶିକ୍ଷିତ ଅଗ୍ରଗମନା ପୁଅଝିଅମାନେ ଗୋଟିଏ ନୂତନ ସ୍ୱର୍ଗର ସ୍ଥାପନ କରିଛନ୍ତି । ଯେଉଁଠି ସମସ୍ତେ ସମାନ, ସମସ୍ତେ ସ୍ୱାଧୀନ । ସବୁ ଚଳେ । ମଡ଼୍ ହେବାର ଅର୍ଥ ଯେ ଦେଖାଇ

ଦାଅ ସବୁ ଚଳେ । ଅମୁକ ପ୍ରାନ୍ତରୁ ଆସିଛ, ସେଇଥିପାଇଁ ଏମିତି ବେଶ ପିନ୍ଧିଛ । ଏଭଳି ଉଚ୍ଚାରଣ କରୁଛ, ଏଭଳି ଖାଦ୍ୟ ଖାଇବା ପାଇଁ ନାକ ଟେକୁଛ ବୋଲି ଯେମିତି କାହାର ସନ୍ଦେହ ନ ହୁଏ । କହିଲେ ଚୁହ ଯେ ତୁମେ ଭାରତ ନାଟ୍ୟମ୍‌କୁ ହେଟ୍ କର କମ୍ବା ଲଭ୍ କର । ରାସ୍ତାରେ ଆଇସ୍‌କ୍ରିମ୍ କୋନ୍ ଚାଟିଲେ ଭଲ ଲାଗେ ନାହିଁ କନ୍ତୁ କାକୁଡ଼ି ଚୋବେଇଲେ ମଜା କମ୍ବା ଆଇସ୍‌କ୍ରିମ୍ ଚାଟିଲେ ମଜା କନ୍ତୁ···ମୂଳକଥା ହେଉଛି ଯେ ଜଣେଇ ଦାଅ ତୁମେ ବ୍ୟକ୍ତି, ସ୍ୱାଧୀନ, ପ୍ରାଚ୍ୟ-ପାଶ୍ଚାତ୍ୟ ବିଶ୍ୱଭାରତୀୟ । ତୁମେ ହିଁ ବାନା ଟେକି ଧରିଛ, ନ ହେଲେ ଏ ଦେଶ କେବେଠୁଁ ଖଣ୍ଡ ଖଣ୍ଡ ହୋଇ ସାରନ୍ତାଣି ।

ଜଣେଇଛ, ଦେଖେଇଛ । ଅଶୋକ ଇନ୍‌ଷ୍ଟିଚ୍ୟୁଟ୍‌ରେ ପଢିଲା ପରେ ମନେ ହେଉଥିଲା ଏଥର ଆହୁରି ଜଣେଇ ଦେଖେଇ ପାରିବ । ଅଶୋକ ଧର୍ମରେ ଅନୁପ୍ରାଣିତ ହୋଇ କହି ପାରିବ ଯେ ଆମର ଏଇ ମଡ୍-ବସ୍ତିର ଆଜିକାର ନୁହେଁ, ବହୁଦିନର । ଏଥିରେ ଫିଲସଫି ଅଛି । ସବ୍ ମୁଁ ମୈଁ ହିଁ ମେ ପକ । ସମସ୍ତେ ନଜର, ମୋର ପ୍ରଜା, ମୋର ରଜା । ସମସ୍ତେ ନଜର···

ନଜର ଯଦି ମୋତେ ସେମାନେ ଏକୁଟିଆ ଛାଡ଼ି ଦେଇ ଚାଲିଯାଉ-ଛନ୍ତି କାହିଁକି ? ଆ' ଆ' ବସି ଆ' ଖାଇ ଆ' ବୋଲି କହୁଛନ୍ତି କାହିଁକି ? ଅବଶ୍ୟ କହୁଛନ୍ତି । ନୂଆଦଲ୍ଲୀ ମିଛ । ଅଶୋକ ଇନ୍‌ଷ୍ଟିଚ୍ୟୁଟ୍ ଆହୁରି ମିଛ ।

ଅଶୋକ ଇନ୍‌ଷ୍ଟିଚ୍ୟୁଟ୍‌ର ଗେରୁଆକ୍ରାନ୍ତି ଝୁଲାମୁଣି ଭାଇଯାହେବ, ଅଦ୍ୱିତୀୟ ଅନନ୍ୟ ଭାଇସାହେବ ସବୁଠାରୁ ମିଛ !

ଶୋଭନା ଛାଡ଼ିଗଲେଇ ହେଲାପରି ମନକୁ ମନ ହସିଲା । ମାଙ୍କଡ଼ରେ ଛୁଟା ହୋଇଥିବା ଜଣେ ନାଗରିକ ଦାନ୍ତ ଦେଖାଇଲା । ଆଉ ଜଣେ ଅଳ୍ପ ସ୍ୱରରେ ହୁଇସିଲ୍ ମାରିଲା । ଧରିବନ୍ଧା ପ୍ରତିକ୍ରିୟା । ଏଗୁଡ଼ାଙ୍କର କାରବାର କଣ ଆଜି ନୂଆ ଦେଖୁଛି ? ହୁଇସିଲ୍ ପରେ ସିନେମା ଗୀତର ପଦେ ବାହାରି ଆସିନ ନାହିଁ ନୁହେଁ ।

ମୁଁ ତାଙ୍କୁଇଁ ଦେଖାଇବା ପାଇଁ ହସୁଛି । ଯେଉଁ ଭଦ୍ରଲୋକ ନିଜକୁ ଧନ୍ଦା-ବନ୍ଧା ନୁହେଁ ବୋଲି ଭାବନ୍ତି । ମୁଁ ତାଙ୍କୁ ଜଣେଇବା ପାଇଁ କହୁଛି ଯେ ମୁଁ ତାଙ୍କ ମୁହଁ ଉପରେ ହଜାରେ ଗୁଣ ଗାଇଛି ପିନା, ମୁଁ ଜାଣେ ସେ ଗୋଟିଏ କାଳୁ ନୁହେ । ମୁଁ ହସୁଛି, ତାଙ୍କର ଶୁଖିଲା ଗେରୁଆ ବସ୍ତ୍ର ଉପରକୁ ମେଞ୍ଚାଏ ଫୋପାଡ଼ୁଛି । ହେଲା ?

ପ୍ରଜ୍ଞାଶାଳୀ ପୁରୁଷ, ଏତେ ବୁଦ୍ଧି ଥାଉଁ ଥାଉଁ ଅଶୋକ ଇନ୍‌ଷ୍ଟିଚ୍ୟୁଟ୍‌ରେ ପଶିଲ କାହିଁକି ? ମୁଁ ଅବୋଧ ବାଳିକା, ନାଆଁ ଯଶରେ ଭୁଲିଗଲି, ଭାବିଲି ଏଇ ହେଉଛି ନୂଆଦିଲ୍ଲୀ ସଂସ୍କୃତିର ବୈଶିଷ୍ଟ୍ୟ ଚିହ୍ନ, କିନ୍ତୁ ତୁମେ କେମିତି ଠକିଗଲ ? ଠକିଗଲ ନା ନିଜକୁ ଠକେଇଲ ମ ? ତୁମର ସେଇ ମୃଦୁଭାଷ ମନ୍ଦହାସ ଛାଡ଼ି ସତକଥା କହିଲ ଦେଖି ?

ଗେରୁଆ ପିନ୍ଧିଛ କାହିଁକି ? କହିଲେ କଣ ନା ମୁଁ କାହାର ମନରେ ଭ୍ରମ ଆଣିବାକୁ ଚାହେଁ ନାହିଁ, ଯେ ମୁଁ ତ୍ୟାଗୀ, ବାବାଜୀ, କି ସେମିତି କିଛି କହିଲେ ମୁଁ ରଙ୍ଗିନ୍ କୁର୍ତ୍ତା ପିନ୍ଧିବାକୁ ଚେଷ୍ଟା କରିଛି, କିନ୍ତୁ ପାରି ନାହିଁ। କାହିଁକି ? ରଙ୍ଗରେ ଦେହ ପୋଡ଼ି ଯାଉଥିଲା ? ଧଳା କାହିଁକି ପିନ୍ଧୁ ନାହିଁ ବୋଲି ପଚାରିଲି ଯେ କହିଲେ ଧଳା ଧଳା ହୋଇ ରହେ ନାହିଁ, କଳା ପଡ଼ିଯାଏ। ଯେତେକ ଢଙ୍ଗ, କଥା ଚତୁରୀ।

ମୁଁ କହୁଛି ତୁମେ ବଡ ମିଛ, ବିରାଟ ଫ୍ରଡ୍।

ମୁଁ କହୁଛି ତୁମେ ମଧ୍ୟ ପୁରୁଷ। ସେଇଯା।

କେଉଁଠି ଦୂରରେ ବାଣ ଫୁଟୁଛି। ଶୋଭନାର ମନେ ପଡ଼ିଲା ଆଜି ହେଉଛି ରାବଣ ଜଳା ଉତ୍ସବ। ରାମଲୀଳା ମଇଦାନଠୁ ଆରମ୍ଭ କରି କେତେ ଗ୍ରେଟ୍ ବଡ଼ ପଡ଼ିଆରେ ରାବଣ, କୁମ୍ଭକର୍ଣ୍ଣ, ମେଘନାଦଙ୍କୁ ଜଳେଇ ଦିଆ ଯିବ। ନିଆଁ ଏବଂ ଶବ୍ଦର ଚମତ୍କାର ଦେଖାଇ ବାଳକମାନେ ଟଳି ପଡ଼ିବେ। ଦେଖିଲେ ମନ୍ଦ ହେବ ନାହିଁ। ଆଦର୍ଶ ଜଣେ ମୀରାଣ୍ଡା ହାଉସ ବାଲୀ କହିଲା ଯେ ରାଜଧାନୀରେ ଏଭଳି ଅଭଦ୍ର ତାମସା ବନ୍ଦ କରି ଦେବା ଉଚିତ୍। ସତେକି ରାଜଧାନୀର ମର୍ଯ୍ୟାଦା ରହୁ ନାହିଁ, ମହିଳା ମନୀଷାର ସୂକ୍ଷ୍ମ ଚେତନାରେ ଆଞ୍ଚ ଲାଗି ଯାଉଛି। ସେ ଏବେ କେଉଁ ବିଦେଶୀ ଏୟାର୍ ଲାଇନ୍ ଅଫିସରେ ରିସେପ୍‌ସନିଷ୍ଟ ହୋଇଛନ୍ତି, ମୋଟା ଦରମା ପାଉଛି। କୁଆଡ଼େ ଗଲା ତୋର ସୂକ୍ଷ୍ମ ଚେତନା ? ଆହୁନୁ ଆ, ତୋର ସହ ଥିଲା ମୋର ତା'ଠୁ ଅଧିକ ଥିଲା, ମୋର ନୂଆଦିଲ୍ଲୀ ସ୍ୱପ୍ନ ଆହୁରି ଝଟକୁ ଥିଲା। ହେଲେ ଆଜି ତାକୁ ରାବଣ ପେଟରେ ଛାଡ଼ି ଜଳେଇ ଦେବା। ରଙ୍ଗ ଚହଟିବ, ଶବ୍ଦ ଚମକିବ—ନଷ୍ଟ ହେବାକୁ ଯାଇ ଏଭଳି ସମ୍ମାନ ଆଉ ମିଳିବ କେଉଁଠୁ ?

କାହା ସାଙ୍ଗରେ ଯିବ ? ଯାଉଛି ଭାଇ ସାହେବଙ୍କୁ ଧରିବ।

ଅମ୍ବିକା ପ୍ରସାଦ ପ୍ରୀତକୁ କୋଳରେ ବସାଇ ତାର ଦେହକୁ ଆଉଁଷୁ ଥିଲେ, ତାହା ଭାସିବ ଭାସିବ ଅସ୍ପ ଧର ବୋଲି କହୁଥିଲେ ଏବଂ ଶୋଭନାକୁ ମନେ ପକାଉଥିଲେ । ଶୋଭନାର କଣ ଅଛି ଯାହା ପ୍ରୀତର ନାହିଁ ? କିଏ କହିଲା ସେ ଫୁଲର ଦେହ କଢ଼ିର ଦେହ ପର ନୁହେଁ, ତାକୁ ଏମିତ ଅଉଁସି ହେବ ନାହିଁ, ଗେହ୍ଲା କର ହେବ ନାହିଁ ? କାହିଁକି ହେବ ନାହିଁ ? ପୃଥିବୀର ଯେତେକ ନରମ ଶୀତଳ ଛବ ସକାଳସଞ୍ଜର ଆକାଶ, ନୀରବ ପାହାଡ଼, ନଦୀର କୂଳବନ୍ତ ସମୁଦ୍ର···ସମସ୍ତଙ୍କ ଶାନ୍ତ ଭଗବାନ୍, ସେ ଯେମିତ ମୋତେ ଆଉଁଷନ୍ତି ମୁଁ ସେମିତ ଏଇ ଫୁଲେଇ ଝିଅକୁ ଆଉଁଷୁଛି । ଶୋଭନାକୁ ମଧ ସେମିତ ଛୁଇଁ ଛୁଇଁ ପାରବ । ସେଇ ଗୋଟିଏ ରୂପେଲ ପୁତୁଲ । ସୁନେଲ ନୁହେଁ ।

ଓଃ ! ଇଏ କଣ ବାଣ ନା ବୋମା ? ରାବଣଜଳା ଆରମ୍ଭ ହୋଇ ଗଲାଣି ?

ଶବ୍ଦ ଶୁଣି ପ୍ରୀତ ଆଖି ମିଟିକଲାକେ ତାଙ୍କ କୋଳରୁ ଛୁଟି ଦୌଡ଼ି ପଳେଇଲା । ଯାଉଛି ବୋଲି ମଧ କହିଲା ନାହିଁ ।

ପ୍ରଥମେ ଅମ୍ବିକା ପ୍ରସାଦଙ୍କର ମନେ ହେଲା ତା ପଛେ ପଛେ ଚାଲିକୁ ଯିବେ । ସେଇଠି ଭାବଲେ ଥାଉ, ମୁଁ କାହାର ପଛରେ ଗୋଡ଼େଇ ପାରବ ନାହିଁ । ଉତ୍ସବ ସବୁଦନକୁ ନୁହେଁ । ପ୍ରୀତ ଫେର ଆସିବ ।

ପୁଣି ଶୋଭନାର ଚେହେରା ଚରତକୁ ସ୍ମରଣ କଲେ ସେ ଅନ୍ୟ ଝିଅମାନଙ୍କ ପର ଫୁରୁଫୁରିକା ଦଣ୍ଡ କଣ୍ଡା ନୁହେଁ । ତାକୁ ସୁନ୍ଦର ବୋଲି କିଏ ତ କହି ହେବ ନାହିଁ । ସେମାନେ ତା'ର ସାବନା ରଙ୍ଗ, ଟାକୁଆ ଗାଲ, ଖାଖ ନ କକୁ ଆଙ୍ଗୁଳା ଦେଖେଇବେ । ଇନ୍‌ଷ୍ଟିଚ୍ୟୁଟ୍‌ରେ ତା'ର କାମଦମ ଦେଖି ଉଚ କୋଟର ବୋଲି ଦାବୀ କରବା ଅନୁଚତ । ମୁଁ ତ ଆଉ ଯେମିତ ଅନ୍ୟମାନଙ୍କର ସେମିତ । ସେ ମଧ ପ୍ରଶ୍ନ ଦଗ୍ଦରେ—ମୋର ଗେରୁଆ କୁର୍ତ୍ତା, ଅଭିଆଡ଼ାପଣ, ଏତେ ଡିଗ୍ରୀ, ଡକ୍‌ଟରେଟ୍ ସତ୍ତ୍ୱେ ମୁଁ କାହିଁକି ଏଇ ଇନ୍‌ଷ୍ଟିଚ୍ୟୁଟ୍‌ରେ ପଡ଼ି ରହିଛି, ଇତ୍ୟାଦ । ମୁଁ ଉତ୍ତର ଦଏ, ଅନ୍ୟମାନଙ୍କୁ ଯେମିତ ଦେଇ ଆସିଛି । ହେଲେ ତା'ର ଜିଜ୍ଞାସା ତଥାପି ମୋ ଠେଇଁ ଯୋଡ଼ି ହୋଇ ରହେ । ଅଡ଼ି ବସେ । ଇଏ ନୁହେଁ ଅନ୍ୟ କିଛି ଅଛି । ଆଲୋ, ଆଉ କଅଣ ଅଛି ? ଥିଲେ ଥିବ, ବୁଝେଇବ କେମିତ ।

ଅମ୍ବିକା ପ୍ରସାଦ ଛାତରେ ପାରାପେଟ୍‌କୁ ଲଗି କରି ହାତରେ ହାତ ବନ୍ଧି ଛିଡ଼ା ହେଲେ । । ଏମିତି ଛିଡ଼ା ହେଲା ବେଳେ ସେ ସହସା ସଚେତନ ହୋଇ ଉଠନ୍ତି ଏବଂ ତରତର ହୋଇ ନିଜକୁ କୁହନ୍ତି— ହଁ ଏମିତି ଛିଡ଼ା ହେବା କଥା । ଏଇ ମୋର ବ୍ୟକ୍ତିତ୍ୱ । ଉତ୍ତରବାର ଘୃଣ୍ଣିବାର କୌଣସି କାରଣ ନାହିଁ । ଆଜି ଏଇ ମୁହୂର୍ତ୍ତରେ ତାଙ୍କର ଇଚ୍ଛା ହେଲା ସେ ଅଉ କାହାକୁ ଶୁଣାଇବେ । ଉତ୍ସବର ବଡ଼ ଲମ୍ବା ଶବ୍ଦ, ମଣିଷ-ମଣିଷ ଶବ୍ଦ, ମଣିଷ ଆନନ୍ଦ ଦେ ତାଙ୍କୁ ଚିଢ଼େଇଲା ଚ୍ୟାଲେଞ୍ଜ୍ କଲା କି କଅଣ କହି ହେବ ନାହିଁ, ହେଲେ ତାଙ୍କର ପ୍ରବଳ ଇଚ୍ଛା ହେଲା ଯେ ସେ ନିଜ କଥା ଅଉ କାହା ହାତରେ ଧରେଇ ଦେଇ ଖଲାସ ହୋଇଯିବେ । ପହିଲି ଓ ଶେଷ ଥର ପାଇଁ ।

ଶୋଭନା ଅନ୍ୟମାନଙ୍କ ପରି ନୁହେଁ । ସେମାନେ ତା'ର ଉପୁଜ ରୂପ ଗୁଡ଼ିକୁ ଦେଖିଛନ୍ତି, ତା'ର ଗୃହିଣୀକୁ ହଲେଇ ଦେଇ ଦେଖିଛନ୍ତି । ଗୃହିଣୀର ବନ୍ଧୁବାନ୍ଧବ ହଲେଇ ଦେଇ···ଧ୍ୟାନ୍ତି, ସମସ୍ତେ କଣ ତା'ର ଭଳି ସାହେବ ? ମୋ ଅଡ଼ିକୁ ସେମିତି ଚାହେଁ ବୋଲି କଣ ରମା ଦାମା ଶାମାଙ୍କୁ ସେମିତି ହଇରାଣ କରୁଥିବ ।

ଆ'ଲୋ ହୁଣ୍ଡୀ ଆ' । ଆସନ୍ତୁ ଯଦି ମୁଁ ତୋତେ କୋଳରେ ଶୁଆଇ ଅଉଁସି ଦିଅନ୍ତି । ଆଉ କୁହନ୍ତି କେତେ କଥା ।

ନା ! ଅସମ୍ଭବ ! ସ୍କୁଟର-ଶକ୍ ସାରୁ ଓହ୍ଲେଇ ଆସି ଯେ ଉପରକୁ ତଳକୁ ଚାହୁଁଛି, ଦର ଖୋଜିଲା ପରି ହେଉଛି, ସେ ଶୋଭନା ଦେଖାଇନୁହେଁ ଅଉ କିଏ ହୋଇଥିବ । ତା'ର ପରି ଦେଖିବାକୁ ସମବୟସୀ କଅଣ ଆଉ କେହି ନହାନ୍ତି ? ମୋର ମୁଣ୍ଡ ବିଗିଡ଼ି ଗଲାଣି । ଏମିତି କେବେ ହୁଏ ନାହିଁ ।

ସତ । ଶୋଭନା ଆସିଛି । ଘର ନମ୍ବର ପଢ଼ୁଛି । ରାସ୍ତା ବତୀ ଖୁଣ୍ଟର ଆଲୁଅ ତା'ର ମୁହଁକୁ ଚହେଇ ଦେଉଛି, ସେଇ ମୁହଁ ନାକ ଆଖି ଓଠ । କିନ୍ତୁ ଏମିତି ଗୁରୁ ଗମ୍ଭୀର ଦେଖା ଯାଉଛି କାହିଁକି ?

ପାଛେଟି ଆଣିବାକୁ ହେବ । ଅମ୍ବିକାପ୍ରସାଦ ଉଦ୍ୟତ ହେଲେ । ହେଲେ ତାଙ୍କର ପାଦ ଚଳିଲା ନାହିଁ । ନିଜକୁ ଦମ୍ଭ ଦେଲେ । ଶୋଭନା କାଲିକା ପିଲା, ମୁଁ ତା'ର ଭଳି ସାହେବ । କଥା ହେଉଛି ଯେ ଆଜି ଦିନର କାମକୁ ଘଷିଲା ପରି ମୁଁ ତାକୁ ମନେ ପକାଇଲି ମାତ୍ରେ ସେ ହାଜର ହୋଇଗଲା । ଯମ ପରି । ଭୂତ ପରି । ମୁଁ ତାକୁ ସତରେ ଆସିବାକୁ କହିଲି ନା କଅଣ ?

ଅମ୍ବିକା ପ୍ରସାଦ ତଳକୁ ଓହ୍ଲାଇବା ପାଇଁ ବାଧ୍ୟ ହେଲେ । ଅଧାବାଟରେ ସିଢ଼ିପାହାଚର ମଝିଆମଝି ତା' ସାଙ୍ଗରେ ଭେଟ ହେଲା । ଦୁହେଁ ଦୁହିଁଙ୍କୁ ଗୁହିଁ ନମସ୍କାର ହସ ହସିଲେ, କିନ୍ତୁ ଅମ୍ବିକା ପ୍ରସାଦଙ୍କର ସନ୍ଦେହ ରହିଲା ନାହିଁ ଯେ ଶୋଭନା ରଗିଥିଲା । ହୁଏତ ରାଗିଛି, ରାଗିବ ।

ଅମ୍ବିକା ପ୍ରସାଦଙ୍କର ଅନୁମାନ ଭୁଲ୍ ନୁହେଁ । ସ୍କୁଟରବାଲାକୁ କେ. ଡ. ନଗରକୁ ନେଇଚାଲ ବୋଲି କହିବା ପରେ ପରେ ଶୋଭନା ନିଜ ଉପରେ ରାଗିଥିଲା ଏବଂ ଠିକଣା ଜବାବ ମଧ୍ୟ ଦେଇଥିଲା । ମୁଁ ନିର୍ଲଜ୍ଜ ନୁହେଁ, ମୁଁ କାହାର ଉପରେ ପଡ଼ିବାକୁ ଯାଉନାହିଁ, ମୋତେ ଯେ ଜାଣେ ସେ କଦାପି ଏମିତି ଭାବି ପାରିବ ନାହିଁ । ଭାଇ ସାହେବ ମୋର ବାପ ସମାନ ଏବଂ ଶେଷକୁ ମୁଁ ସ୍ୱାଧୀନ ବୋଲି ଦାବୀ କରିଥିଲା । ତଥାପି ଥରେ, ଡ୍ୟାମ୍ ଇଟ୍, ମୁଁ ରାବଣ ଜଳା ନିଜେ ଦେଖି ପାରିବ କହି ସ୍କୁଟରକୁ ଭିନ୍ନ ବାଟରେ ଯିବାକୁ ଆଦେଶ ଦେଲା । ପୁଣି କହିଲା, ନାଇଁ, କେ. ଡ. ନଗର ୩୪୫ ନମ୍ବର । ନିଜକୁ ବୁଝେଇ ଦେଲା ଯେ ସେ ସତରେ ରାବଣ ଜଳା ଦେଖିବା ପାଇଁ ଯାଉନାହିଁ । ଭାଇ ସାହେବଙ୍କୁ ପରଖିବାକୁ ଯାଉଛି । ସେ କିଛି ଅସ୍ୱାଭାବିକ ନୁହେଁ, ମୁଖାପିନ୍ଧା ପୁରୁଷ ବୋଲି ପ୍ରମାଣ କରିବାକୁ ଯାଉଛି । ମୋର ଅନ୍ୟତମ ରିସର୍ଚ୍ଚ । ଆପତ୍ତି ଅଛି ? ଏଣିକି ରାଗ ରହିବା କଥା ନୁହେଁ । କିନ୍ତୁ ତେଜ ପୂରାପୂରି ଲିଭିଯାଇ ପାରିନଥିଲା ।

"ଘୁରତରେ ବସିବା, ନା କଣ ?...ଆଉ କଣ ଖବର ? ବାଟ ପାଇବାରେ ଅସୁବିଧା ହୋଇ ନାହିଁ ତ ?" ଅମ୍ବିକା ପ୍ରସାଦ ଭିତରୁ ବେତ ଚଉକି ଯୋଡ଼ିଏ ନେଇ ଆସି କୁଶଳ ପ୍ରଶ୍ନ କଲେ । ଆଉ କଣ କହିବେ ବୋଲି ଭାବିଲେ ।

ସତେ କି ଯ୍ୟାଙ୍କ ସାଙ୍ଗରେ ମୋର ଆପଏଣ୍ଟମେଣ୍ଟ ଥିଲା ! ଅହଂକାର ବାଢ଼ି ହୋଇ ଯାଉଛି । ଶୋଭନା ଚିପି ନେଲା । ଘୁରତ ଉପରେ ଡଗଡଗ ହୋଇ ଗ୍ଲଲା । କହିଲା—

"ଭାଇ ସାହେବ, ମୁଁ ବସିବା ପାଇଁ ଆସି ନାହିଁ । କାହିଁକି ଆସିଛି ଜାଣିଛ ?"

ଅମ୍ବିକା ପ୍ରସାଦ ଦଶମୀର ପତଳା ଜହ୍ନ ଆଲୁଅରେ ଶୋଭନାର ଗ୍ରହାଣୀକୁ କଳିବା ପାଇଁ ଗୁହିଁଲେ ।

"ମୁଁ ଦଶରା ଦେଖି ଯିବି । ମୋତେ ସାଙ୍ଗରେ ନେଇ ଗ୍ଲଲ ।"

"ଏଁ ?"

ସମ୍ଭାବତ ଏଁ । ନିର୍ବିଚଲ ଭାଇ ସାହେବ ପଣ ଗଢ଼ି ଉଠିଲା ପୂର୍ବରୁ ଆଉ ଗୋଟିଏ ଯୋଡ଼ଏ ବାଣ ଛୁଡ଼ିବାକୁ ହେବ । ଶୋଭନା ହସି ଉଠିଲା ।

"କାହିଁକି, କଣ ହେଲା ? ମୋର ଦଶବ୍ ଦେଖିଯିବା ମନା ?" ସ୍ୱବଣ ଜଳା ଦେଖିବ ମ, ବୁଝି ପାରୁ ନାହିଁ ? ଛୁଟିରେ ମୋର ବୋଡ଼ିଙ୍ଗ୍ ହାଉସ୍ ସାଙ୍ଗମାନେ ଦଲ୍ଲୀ ଛାଡ଼ି ପଳେଇ ଗଲେଣି, ଅନ୍ୟମାନେ ଏନ୍‌ଗେଜ୍‌ଡ୍ । ଏକୁଟିଆ ସେ ଭିଡ଼ରେ ପଶିବା ପାଇଁ ସାହସ ହେଲା ନାହିଁ । ଖ୍ୱବଲ ଭାଇ ସାହେବ ଘରେ ବସି ବଣ୍ଟଚନ୍ତା କରୁଥିବେ, ତାଙ୍କୁଇ ଧରିବି । ଭୁଲ୍ କଲି ?

କଲ ଓ କୁସୁମ । ଅମ୍ବିକା ପ୍ରସାଦ ଧୀରେ ଧୀରେ ମୁଣ୍ଡ ହଲାଇଲେ । ସତେକି ବୁଝିବାକୁ ସମୟ ଲଗୁଛି ସିନା, ବୁଝି ପାରୁଛନ୍ତି । କହିଲେ—

"ପ୍ରୀତି ବି ସେଇସ୍ଥା ଦେଖିବ ବୋଲି ହେଉଥିଲା । ସେଇଥି ପାଇଁ ମୋ ପାଖରୁ ଉଠି ପଳେଇଲା ।"

ପ୍ରୀତିଟି ପୁଣି କିଏ ? ଯିଏ ହେଉ ମୋର ଖୁସି ଯାଉଛି । ମୁଁ ତା' ସାଙ୍ଗରେ ବାଦ କରିବାକୁ ଯାଉ ନାହିଁ । ମୋର ଉଦ୍ଦେଶ୍ୟ ଭିନ୍ନ ।

"ସେ ସିନା ଉଠି ପଳେଇଲା, ମୁଁ ତୁମ ସାଙ୍ଗରେ ଆସିବି ପରା ?"

ଅମ୍ବିକା ପ୍ରସାଦଙ୍କର ମନେ ହେଲା ତା'ର ମୁହଁର ଭାବ ଅତି ଜାଣିଅନ୍ତା, ଜାଣିଅନ୍ତାରୁ ଜଳନ୍ତା ଦୂର ନୁହେଁ । ଆସିଛି ଯଦି କାହିଁକି ମୋତେ ଏମିତି ହଇରାଣ କରୁଛି, କାହିଁକି ମୋ ପାଖରେ ଥିର ହୋଇ ବସିବ ନାହିଁ ? ତାହାହେଲେ ମୁଁ ତାକୁ କୋଳରେ ଶୁଆଇ ଆଉଁସି ଦିଅନ୍ତି, କେତେ କଥା କୁହନ୍ତି···

ଦେଖୁଛି ସ୍ୱାଙ୍କ ଉର ମାଡ଼ୁଛି । ହେ ଭଗବାନ୍, ସ୍ୱେ କଣ ସତରେ ଖାବୁଛନ୍ତି ମୁଁ ତାଙ୍କୁ— !

ଅମ୍ବିକା ପ୍ରସାଦ ପାଖେଇ ଆସିଲେ । ପାଖରେ ଦେଖିଲେ ହୁଏତ ଶୋଭନା ତା'ର ଭାଇ ସାହେବଙ୍କୁ ଭଲ ଭାବରେ ଚହ୍ନି ପାରିବ, ଉତ୍ତର ମାଗିବ ନାହିଁ, କଥା ଶୁଣିବା ପାଇଁ ରାଜି ହୋଇଯିବ ।

ଆରମ୍ଭ ହୋଇଗଲଣି । ରାମଲୀଳା ମଇଦାନର ରାବଣ ମରିବାକୁ ବସିଲାଣି । ପ୍ରଧାନମନ୍ତ୍ରୀ ତା'ର ଛାତିରେ ତୀର ବିନ୍ଧ ମାରିଦିଅ ଜାଳିଦିଅ ବୋଲି କହିଲେଣି । ନହେଲେ ବୃପ୍ତ ହାଉଇ ବାଣ ଗୋଟିକ ପରେ ଗୋଟିଏ ଉପରକୁ ଉଠୁ ନ ଥାଆନ୍ତେ । ଅନ୍ୟାନ୍ୟ ଶବ୍ଦକୁ ଚୁପ୍ କରି ମାରଣର ପହିଲି ପ୍ରଚଣ୍ଡ ଶବ୍ଦ···ଯାହା ହେଉ ଦଶ ପନ୍ଦର ମିନଟ୍ କିମ୍ବା ଅଧଘଣ୍ଟା ଭିତରେ ସବୁ ଶେଷ ହୋଇଯିବ । ଶୋଭନାକୁ ଉତ୍ତର ଦେବାକୁ ପଡ଼ିବ ନାହିଁ

ଉତ୍ତର ଦେବକୁ ପଡ଼ିବ ନାହିଁ ? କିଏ କହିଲା ? ଆହୁରି କେତେ ମଇଦାନ ଅଛି, ଆହୁରି କେତେ ରାବଣ ଅଛନ୍ତି । ଏଇ କଲୋନିର ପଛକୁ ଯେଉଁ ପଡ଼ିଆ ଅଛି ସେଠି ମଧ୍ୟ ଆୟୋଜନ ହୋଇଛି, ଶୋଭନା ଦେଖିଥିବ ।

"ତୁମ ନୂଆଦିଲ୍ଲୀରେ ଏଇ କେଉଁଟା ତାମସା ଛଡ଼ା ଆଉ କଣ ଅଛି ? ବାକୀ ସବୁ ଉପର ଚକ୍‌ଚକ୍ ଧୋବ ଧାଉଳିଆ ( ଗେରୁଆ ବୋଲି କହୁ ନାହିଁ ), ସଂସ୍କୃତିର ଫମ୍ପା ଆବାଜ ( ଅଶୋକ ଇନ୍‌ଷ୍ଟିଚ୍ୟୁଟ୍ ) ପ୍ରଦର୍ଶନ, ଭାଷଣ, ଖାଦ୍ୟ ଗଳାବନ୍ଧ, ପୃଥୁଳା ମୃଦୁଳା କାଞ୍ଜିବରମ୍···"

ମୁଁ ଜାଣିଶୁଣି ସମାଜପ୍ରବଣ ହାଡ଼ଜଳା କଥା କହୁଛି । ଏମାନଙ୍କ ସମାଜ-ଚେତନା କୁଆଡ଼େ ଆମଠୁଁ ବେଶି, ପୁଣି ସେ ନୂଆଦିଲ୍ଲୀ ପୁରୁଷ, ପୁଣି ସେ ଆମର ମହାନ୍ ଭାଇ ସାହେବ···ଆରେ, ଏମିତି ମୋର ପାଖକୁ ଘୁଞ୍ଚି ଆସୁଛନ୍ତି କାହିଁକି ? ବ୍ୟାପାର କଣ ?

ଅମ୍ବିକା ପ୍ରସାଦ ପାଖକୁ ଲାଗି ଆସି ଶୋଭନାର ହାତ ଧରିଲେ ।

ହାତ ଧରିଲେ ଏବଂ ଆଉଁସି ଦେବା ଅଯଥା ନ ହେଲେ ଆଉଁସି ଦେବା ବୁଝେଇ ଦେବ ବୋଲି କହିବାକୁ ଚାହିଁଲେ । କହିବାକୁ ଚାହିଁଲେ ତୁ ପିଲାଲୋକ । ନୂଆଦିଲ୍ଲୀର ମହତ୍ତ୍ୱ ଅଛି, ନ ହେଲେ ମୁଁ ମୋର ଗଙ୍ଗାକୂଳିଆ ଘର, ଜୀବନ ସାଲୁବାଲୁ ଗାଆଁ ସହର ଛାଡ଼ି ସାରା ଭାରତ ଘୂରିବୁଲି ଏଇଠି ଆସ୍ଥାନ ଜମେଇ ନ ଥାଆନ୍ତି । ଆଜି ଏଇ ଦଶହରା ପାଟିତୁଣ୍ଡ ବାଣ ଆଲୁଅ ମୋତେ ଚଡ଼ଉଛି ସିନା, ଏମିତି କେବେ ହୁଏ ନାହିଁ । ଇଏ ସରିଯିବ ।

ହାତକୁ ହୁଗୁଳେଇ ଆଉଁସିଲା ପରି ହେଲେ । ଇନ୍‌ଷ୍ଟିଚ୍ୟୁଟ୍‌ରେ ଅଶୋକଙ୍କର ମୂର୍ତ୍ତି ଦେଖି ନାହୁଁ ? ଲୋକ ଭଲ ଦେଖା ଯାଉଛନ୍ତି, ଅଥଚ ଲୋକ ନୁହନ୍ତି ।

କାହିଁକନା ଅଶୋକଙ୍କର ଚେହେରା କେମିତ କେହ କାଣନ୍ତ ନାହିଁ । ତାଙ୍କ ସାଙ୍ଗରେ ନଜକୁ ଯୋଡ଼ ହେବ ନାହିଁ, କନ୍ତୁ ତାଙ୍କ ବଚନାମୃତରେ ବୋଲ ହୋଇ ଶାନ୍ତ ମିଳବ । ଶସର୍ଚ ଉପରେ ଉପରେ ଭାସୁଛ ? ଭାସୁଥାଉ, ଉଡ଼ୁଥାଉ, ସେଇ ତ ସୁନ୍ଦର । ସେଇ ତ ନ୍ୟୁଆଦଲ୍ଲୀ । ଅଶୋକ ଇନ୍‌ଷ୍ଟିଚ୍ୟୁଟ୍ ନଥିଲେ ବୃଷ୍ଣଦର୍ଶନ ସମିତ ଅଛ, ମହାଭାରତୀୟ ସଂସ୍କୃତ ପରିଷଦ, ପ୍ରାଚ୍ୟ-ପାଶ୍ଚାତ୍ୟ ଇତହାସ ଆନ୍ଦୋଳନ··· ଏଭଳ ସଂସ୍ଥା ନ୍ୟୁଆଦଲ୍ଲୀ ଛଡ଼ା ଆଉ କେଉଁଠି ମିଳବ ନାହିଁ । ଏଠି ମଣିଷ ମୁହଁର ଗଣ୍ଡଗୋଳ ନାହିଁ, ସେଇଲଗି କେତେ ପାଠ ପଢ଼ି ହେବ, କାଗଜ ଲେଖି ହେବ, କେତେ ଶାନ୍ତ । ହିଅଲେ, ତୁ ମିଛୁଟାରେ ନ୍ୟୁଆଦଲ୍ଲୀ ଉପରେ ବଗୁଡ଼୍‌କୁ କାହିଁକ କହଲୁ ?

ଭାଇ ସାହେବ, ତୁମ ଓଠ ଥରୁଛ, ଓଠର ଗାର ସବୁ ବାଣ ହୋଇ ଯାଉଛ, କନ୍ତୁ କସ୍ ଫିସ୍ କଲେ ଜାଣିଥା ଗୁପୁଡ଼ାଏ ମାରିବ । ତା'ପରେ ପଛକେ ଦରିବା ଦେଖେଇ ନେବ ନାହିଁ ବୋଲ କଣ ଏଇଆ କରିବାକୁ ବସିଛ ?

ଶୋଭନା ତୁନ ହୋଇ ମୋ ଆଡ଼କୁ ଚାହିଁଛ । ପ୍ରୀତ ଏମିତ ଚାହେଁ ନାହିଁ ତ ? ମୁଁ କଣ କରିବ ତା' ହେଲେ ?'ଆକୁଳ ଉପରକୁ ଆଉଁସିବ ? ଗହନ ଗୋପନ ନଜକଥା ଅଜାଡ଼ ଦେବ, ଶୁଣିବୁ ?···ଧାତ୍ ଏଇ ବାଣଫୁଟା କଣ ସରିବ ନାହିଁ ? ଆଉ କେଉଠି ନଆଁ ଲଗିଲ ? ?

ଭାଇ ସାହେବ, ମୋ ହାତ ରବର କଣ୍ଢେଇ ନୁହେଁ ଯେ ତା' ସାଙ୍ଗରେ ବସି ଖେଳୁଥିବ । ମୋ ହାତରେ ଦେହ ଲଗିଛ, ଦେହରେ ମନ । ଶୋଭନା ଚଟ୍‌କନ ହାତ ଛଡ଼େଇ ନେଇ ଘୁଞ୍ଚିଗଲ । କହଲ—

"ଦେଖୁଛ ତୁମେ ଉଠିବା ମତଲବରେ ନାହିଁ, ମୁଁ ଯାଉଛ ।"

"ନା, ନା, ଶୁଣ୍ ମୁଁ କଣ କହୁଛ । ଯିବାକୁ ସମୟ ନାହିଁ । ପହୁଞ୍ଚିଲା ବେଳକୁ ସବୁ ସରି ଯାଇଥିବ ।"

"ମୁଁ ଜାଣେ ।"

"ଶୋଭନା, ମୋତେ ଭୁଲ୍ ବୁଝିବୁ ନାହିଁ । ଦଆଲକୁ ଆସିବୁ, ତୋତେ ନେଇଯିବ, ମତ କହୁଛ, ପ୍ରମିସ୍—"

ଶୋଭନା ଆଜି ଶୁଣିବାର ଅପେକ୍ଷାରେ ନଥିଲା । ଭିତରର ଖୋଲା ଦରଜା ବାଟେ ପାହାଚରୁ ପାହାଚ ଓହ୍ଲାଇ ତଳକୁ ଗଲା, ମନେ ହେଲା ଦାଣ୍ଡଫାଟକ ମଧ୍ୟ ତା' ପାଇଁ ଖୋଲା ହୋଇ ରହିଛି, ଆଗରେ ରାସ୍ତା ପଡ଼ିଛି ।

ସୁଦ୍ଦରର ଦେଖାଦର୍ଶନ ନାହିଁ । କେ. ଭି. ନଗରର ଅନାମିକା ଲେନ୍‌ରେ ଜଣେ ଅଧେ ଚାଲୁଛନ୍ତି, ଚାଲିବାରେ ଗତି ନାହିଁ । କେଉଁ ଆଲୁଅଘର ଝରକାର ରେଲିଙ୍ଗ୍‌କୁ ଧରି ସାନ ଝିଅଟିଏ ଛିଡ଼ା ହୋଇଛି, ଦେଖୁଛି ନାହିଁ । ଦଶହରାର ପଛପଟେ କିଛି ନାହିଁ । କେବଳ ଗୋଟିଏ ଦାଦି ଏକୁଟିଆ ଚାଲିଛି, ଚାଲୁ ଚାଲୁ ଧାଉଁଛି ।

ଶୋଭନାର ମନେ ପଡ଼ିଲା କେଉଁ ସୁଦୂର ଅତୀତରେ ହୁଏତ ପୂର୍ବଜନ୍ମରେ, ସେ ତା'ର ବାପାମାଆଙ୍କ ସାଙ୍ଗରେ ମେଳା ଦେଖି ଯାଉଥିଲା, ମାଆର ଥକା କୋଳରୁ ଓହ୍ଲେଇ ଆସି ବାପାଙ୍କ କୋଳକୁ ଯିବାଯାଏଁ ସେମାନେ ଆଗକୁ ଚାଲିଗଲେ । ମୁଁ ପଛରେ ପଡ଼ିଗଲି । ଲୋକଜନ ରାସ୍ତା ଉପରେ ବସି ପଡ଼ି କାନ୍ଦିଲି —ଭେଁ—ଏଁ—

ମନ ହେଉଛି ଏଇକ୍ଷଣି ବସି ଭେଁ ରଡ଼ି ଛାଡ଼ିବି । ପୁଲିସ୍ କି ପୁଲିସ୍ କେହିହେଲେ ଆସିବ ।

ଦଶହରାରୁ ଦୀପାଳି ଭିତରେ ଦିଲ୍ଲୀରେ ଚମତ୍କାରପ୍ରଦ ଘଟଣା କିଛି ଘଟି ନ ଥିଲା । ତେବେ ଋତୁ ଅନୁକୂଳ ହୋଇଥିବାରୁ ବିଦେଶରୁ ଏକାଧିକ ଭି. ଆଇ. ପି. ଆସି ଭାରତର ଉଜ୍ଜ୍ୱଳ ଅତୀତ ଏବଂ ସମୁଜ୍ଜ୍ୱଳ ଭବିଷ୍ୟତର ପ୍ରଶଂସା କରିଥିଲେ । ଅଶୋକ ଇନ୍‌ଷ୍ଟିଚ୍ୟୁଟ୍ ତରଫରୁ ୪୧୫ ନମ୍ବର ପେପର୍ ପ୍ରସ୍ତୁତ କରାଯାଇଥିଲା ! ସେଥିରେ ପ୍ରସଙ୍ଗକ୍ରମେ ପ୍ରମାଣ କରାଯାଇଥିଲା ଯେ ସମ୍ରାଟ ଅଶୋକ ଦୀପାବଳୀକୁ ବିଶେଷ ଭଲ ପାଉଥିଲେ । ସେ ଥରେ କହିଥିଲେ ଯେ ଗ୍ରେଟରୁ ବଡ଼ ସବୁ ଦୀପର ଆଲୁଅ ନେଇ ଏଇ ମୋର ରାଜଧାନୀ, ଏଇ ମୋର ରାଜ୍ୟ ।

ଦୀପାଳି ସନ୍ଧ୍ୟାରେ ରାଣୀ ବୋର୍ଡ଼ିଙ୍ଗ୍ ହାଉସ୍‌ର ମାଲିକାଣୀ ବିପୁଲା ରାଣୀ ଗ୍ରେସ୍ ପ୍ରତି ଭଡ଼ାଟିଆର କୋଠରୀକୁ ଲଡ଼ୁ ବାଣ୍ଟିବା ପାଇଁ ଗଲେ । ବର୍ଷକୁ ଥରେ ତାଙ୍କୁ ଏଇ ବନ୍ଧୁଭାବ ଦେଖାଇବାକୁ ପଡ଼େ ଏବଂ ସେତିକବେଳେ ଯେ

ଲୁହ ଟଗରେ ତାଙ୍କର ସ୍ୱର୍ଗବାସୀ ସ୍ୱାମୀଙ୍କୁ ମନେ ପକାନ୍ତି । ଆଜି ଶୋଭନା ଦେଶାଇର କୋଠରୀରେ ପହୁଞ୍ଚିଲା ବେଳକୁ ତାଙ୍କ ଆଖିରେ ଲୁହ ଜମି ଯାଇଥିଲା । କିନ୍ତୁ ଅନ୍ଧାରରେ ଲୁହ ଦିଶିଲା ନାହିଁ । ରାଣୀ ଗୁପ୍ତା ବିରକ୍ତ ହେଲେ । ବିରକ୍ତିକୁ ଆତ୍ମୀୟତାରେ ହାଣି ଦେଲା ପରି ଚଢ଼ା ଗଳାରେ କହିଲେ—ଡିଅର୍, ତୋର କଣ ବୁଦ୍ଧିସୁଦ୍ଧି ନାହିଁ, ଦିଆଲି ପର୍ବ ଦିନରେ ଆଲୁଅ ଲିଭେଇ ବସିଛୁ ? ତୋର କଣ କେହି ନାହାନ୍ତି ? ରାଣୀ ଆଣ୍ଟି ମଲାଣି ?

ସେଇ ମୁହୂର୍ତ୍ତରେ ଶୋଭନା ନିଷ୍ପତ୍ତି କଲା ଯେ ସେ ସେଠିକି ଯିବ । ଅଭିମାନ ଆତ୍ମସମ୍ମାନ ଇତ୍ୟାଦିର ଯାନକୁହା ନ ମାନି ପଳେଇବ । ରାଣୀ ଆଣ୍ଟିଙ୍କୁ ଦେଖେଇ ଦେବ ଯେ ସେ ମଲେ ମରୁ ଶୋଭନାର ଯାଏ ଆସେ ନାହିଁ, ତାର ଆଉ କେହି ଅଛନ୍ତି । ଇନ୍‌ଷ୍ଟିଚ୍ୟୁଟର କାମ ଭିତରେ ପୁଣି ଥରେ ନିମନ୍ତ୍ରଣ କରିବାକୁ ହୁଏତ ସମୟ ପାଇ ନାହାନ୍ତି, କିନ୍ତୁ ସେଦିନ ସ୍ପଷ୍ଟ କହିଥିଲେ—ଦିଆଲିକୁ ଆସିବୁ, ତୋତେ ନେଇ ଯିବି, ସତ କହୁଛି । ତା'ଛଡ଼ା ଆମ ରାଇ ସାହେବଙ୍କୁ ବେଶି ଲାଜ କି ନା ।

କେ. ଡ଼ି. ନଗର ରାଇ ସାହେବଙ୍କ ବରସାତିରେ ମହମବତୀ ଜଳୁଛି । ରାଇ ସାହେବ ଦିଆଲି ମନାଉଛନ୍ତି ! ଗୃହିଣୀ ବସିଛନ୍ତି ! ବିଶୁ, କସ୍ତୁରୀ, ରତ୍ନା, ବଲ୍‌ଜିତ୍, ରାଣୀ ଆଣ୍ଟି ଦେଖ ଦେଖ ସମସ୍ତେ—

କିଏ କାହାକୁ ପାଇବା ପାଇଁ ପ୍ରଥମେ ହାତ ବଢ଼େଇଲା, ଆସ-ହସ ହସିଲା, ଗୃହାଣୀର ଚଷ୍ମାଉ ପଠେଇଲା କହି ହେବ ନାହିଁ । ତେବେ ସାକ୍ଷାତ ହେଲା ମାତ୍ରେ ହିଁ ଦୁହେଁ କୁଣ୍ଢାକୁଣ୍ଢି ହେଲେ । ଅନବରତ ଶବ୍ଦ ଏବଂ ଅଗଣିତ ନିଆଁ ଜଳା ଅ.ଲୁଅକୁ ପରୁଆ କଲେ ନାହିଁ । ଅମ୍ବିକା ପ୍ରସାଦ ନିଶ୍ୱାସ ଚପି ନିଜକୁ କହିଲେ—ମୁଁ ପାରିବ । ମୁଁ ପାରିବ । ନିଆଁ କେବେ ଜଳିଥିଲା, କାହାକୁ ଜାଳିଥିଲା ମୋର ମନେ ନାହିଁ । ନିଆଁରେ ଦେହ ଠୋ ଠା ଫୁଟେ, ଗନ୍ଧ ବାହାରେ, ତା' ବୋଲି ମୁଁ ଦେହକୁ ଡରିବ ନାହିଁ । ମୁଁ ସେତେବେଳେ ପିଲା ଥିଲି, ନାଗି ଦେହକୁ ଦେଉଳ ବୋଲି ଭାବିଥିଲି । ମୁଁ ପିଲା ଥିଲି, ଆଉ ସେ ମୋର ମାଷ୍ଟ୍ରାଣୀ, ମାଷ୍ଟ୍ରାଣୀରୁ ବଳି ନାରୀ, ମାଆ, ଭଉଣୀ ସବୁ ଥିଲା । ସେ ଜଳିଲା ବେଳେ ପୁରୁଷ-ମାନେ ହସୁଥିଲେ, ଆଉ ସେ ନିଜେ ହସୁଥିଲା, ଅସଭ୍ୟ ଶବ୍ଦର ଦିଆନିଆ ହୋଇ

ସେମାନେ ମୋତେ ଡରେଇଲେ । ତା' ବୋଲି ମୁଁ କଣ ସବୁଦିନେ ଡରୁଥିବି ? ଦେହମାନଙ୍କୁ ଦେଖୁଥିବି ଦେଖୁଥିବି, ଆଉଁସିବା ପାଇଁ ଆଉଁସୁଥିବି ? ଭଲପାଇବାକୁ ମାରି ଗୋଲି, ମୋର ସେକ୍ସ ଅଛି । ମୁଁ ପୁରୁଷ ।

ଶୋଭନା ଅମ୍ବିକା ପ୍ରସାଦଙ୍କ ଛାତିରେ ମୁହଁ ଗୁଞ୍ଜି କାନ୍ଦୁଥିଲା । କହୁଥିଲା ଲାଜସରମ ଛାଡ଼ି ଏତେ କଷ୍ଟ କରି ମୁଁ ମୋର ରାଜଧାନୀକୁ ପାଇଛି । ସେଇଥିପାଇଁ ନୁହେଁ, ସେମିତିକା ନୁହେଁ, କୋଠିକରେ ଗୋଟିଏ ବୋଲି ଭାଇ ସାହେବ ।

ଆଲିଙ୍ଗନ ମଝିରେ ଶୋଭନା ପାଟି ଫିଟାଇବାକୁ ବସିଲା । କହିଲା, "ତୁମର ପ୍ରୀତିଟି କିଏ ମ ?"

ଅମ୍ବିକା ପ୍ରସାଦ ଚମକିଲା ପରି ହେଲେ, ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, "କେହି ନୁହେଁ, କିଛି ନୁହେଁ, କାଲିକା ପିଲା···ଯାଉଛି କବାଟ ବନ୍ଦ କରି ଦେବି, ନହେଲେ ସେ ଫେରି ଆସିବ ।"



# ଗମନ

ମୋର ମନ୍ଦିରକୁ ଯିବା ପାଇଁ ମନ ହେଲା । ମନ ହେଲା । ଏ କଉତକ କଥା, ମାନବେନ୍ଦ୍ର ମହାନ୍ତି ଯେ ବୁଦ୍ଧିବାଦର ବଡ଼ପଣ୍ଡା, ଧର୍ମଫର୍ମରେ ବିଶ୍ୱାସ କରନ୍ତି ନାହିଁ, ତାଙ୍କର ପୁଣି ଏମିତିକା ମନ ହେଲା—ଏହି ମର୍ମରେ ଆଶ୍ଚର୍ଯ୍ୟ ହୋଇ ଚୁଟୁକି ମାରିବା ଉଚିତ ନୁହେଁ । ସ୍ତ୍ରୀ ପୁତ୍ର କନ୍ୟା ଗହଣରେ ଥିଲେ ମଧ୍ୟ ପୁରୁଷର "ମନ ହୁଏ" । ତାହାହେଲେ ମଣିଷର ମନ ହେବ ନାହିଁ କାହିଁକି ? ନାରୀ ଲୋଭକୁ ଥୋକେ ପାପ ବୋଲି କହି ପାରନ୍ତି । ମନ୍ଦିର ଲୋଭକୁ ପାପ ବୋଲି କିଏ କହିବ ? ଇଏ ଭୁଲ୍ ଇଏ ମିଛ ବୋଲି ନାସ୍ତିକ ମାର୍କସିକମାନେ ଘୋଷଣା କରିଛନ୍ତି । ମୁଁ ମଧ୍ୟ କରିଛି । କିନ୍ତୁ ଇଏ ପାପ, ଦୋଷ ଏବଂ ଏଥିପାଇଁ ଶାସ୍ତି ବିଧେୟ ବୋଲି କେହି କେଉଁଠି କହିବାର ଶୁଣି ନାହିଁ ତ ? ତେଣୁ ମୋର ଯାହା ମନ ହେଉଛି ସେଇୟା କରିବି । ଧର୍ମ କରିବି ।

ସେମାନେ ହସିବେ । ହସନ୍ତୁ ।

ଆବିଳ ଦୁର୍ଗନ୍ଧ ଘଟରୁ ନିର୍ମଳ ନିର୍ଗନ୍ଧ ମିଛକୁ ଉଠିବି । ଲୋଡ଼ିବି, ଉଠିବି, ପୁଣି ଲୋଡ଼ିବି, ଉଠିବି, ଉଠି ଉଠି ଯିବି, ଶୀର୍ଷରେ ଦାଅଁଙ୍କୁ ଦେଖିଲା ପରେ କହିବି—ପାଇଲି !

ନିର୍ମଳ ଆନନ୍ଦ ପାଇଲା ପରେ ସତ ନ ଥିବ କି ମିଛ ନ ଥିବ । ପୁଣ୍ୟ ପାପ ଅତିକ୍ରମ ବ୍ୟତିକ୍ରମ ହାକିମଗୁଡ଼ିକର ସ୍ତ୍ରୀ ପରିବାର ଇତ୍ୟାଦି ଇତ୍ୟାଦିର ବିସ୍ମର ନ ଥିବ । ଆଶଙ୍କା ନ ଥିବ ।

ଯିବ ଯେ, ମନ୍ଦିରରେ ମାଙ୍କଡ଼ ଅଛନ୍ତି ।

(ସେମାନେ ହସୁଛନ୍ତି)

ଆ-ହା, ମାଙ୍କଡ଼ ଅଛନ୍ତି ବୋଲି ଅବଶ୍ୟ ଡର ମାଡ଼ୁଛି, ତା' ବୋଲି ଯିବି ନାହିଁ ବୋଲି କିଏ କହିଲା ? ମୋର ସହରରେ ମନ୍ଦିର ଅଛି । ମୁଁ ଏଇ ଗଳାଙ୍ଗରେ ପିଲାଦିନୁ ଅଛି, ସଂସାର କାମ କରିଛି, ନାଁ କମେଇଛି, ବଡ଼

ହୋଇଛି, ବୁଢ଼ା ହୋଇଛି···ଅଥଚ ମନ୍ଦିରକୁ ଯାଇ ନାହିଁ । ମନ୍ଦିରକୁ ଗଲେ ଈଶ୍ୱରଙ୍କୁ ମାନିବାକୁ ବାଧ୍ୟ ନୁହେଁ, ତଥାପି ଯାଇ ନାହିଁ । ଟୁରିଷ୍ଟ ଭାବରେ ଯାଇ ନାହିଁ । କୌତୂହଳ ମେଣ୍ଟାଇବାକୁ ଯାଇ ନାହିଁ । କାହିଁକିନା ସେଠି ମାଙ୍କଡ଼ ଅଛନ୍ତି । ହେଲେ ଆଜି ମୁଁ ସେଠିକି ଯିବି, ଯାହା ଜୀବନଯାକ କରି ନାହିଁ ସେଇଆ କରିବି । ମୋର ମନ ହେଉଛି ।

ମାଙ୍କଡ଼ଙ୍କୁ ଦେଖିଲେ ଆଖି ବୁଜି ଦେବି···

ମାଙ୍କଡ଼ଙ୍କୁ ଦେଖିଲେ ଆଖି ବୁଜି ଦେବି···ନାଇଁ, ନାଇଁ, ନାଇଁ, ମୋ ପାଖକୁ ଆସ ନାହିଁ !

ବାରଣ କଲି । ସାହସ କଲି । କାହାକୁ କିଛି ନ କହି ଛତାବାଡ଼ି ନ ଧରି ମନ୍ଦିରକୁ ଯିବା ପାଇଁ ବାହାରିଲି ।

ଗଲିବାଟେ ପଛବାଟେ ଯିବି ନାହିଁ ବୋଲି ସ୍ଥିର କଲି । ଦାଣ୍ଡ ଦରଜାରୁ ବାହାରି ମେନ୍ ରୋଡ୍‌ରେ ଯିବି, ମେନ୍ ରୋଡ୍‌ରେ ଚାଲି ଚାଲି ଚାଲି···ସହର ମୁଣ୍ଡରେ ପହଞ୍ଚିବି । ସେଇଠି ଦେଖିବି ପାହାଡ଼ । ପାହାଡ଼ ଉପରେ ମନ୍ଦିର । ମନ୍ଦିର ଉପରେ ପତାକା । ଉଚ୍ଚାଟ ହେବି । ପାହାଚରୁ ପାହାଚ ଡେଇଁ ଡେଇଁକା ଉପରକୁ ଯିବି । ପଛକୁ ଅନାଇବି ନାହିଁ, ଉଠାଣିର ଦୁଇପାଖରେ ଧାଡ଼ି ହୋଇ ଲାଗିଥିବା କୁବୁଜା କୁଢ଼ିଆ ଭିକାରିମାନଙ୍କୁ ଅନାଇବି ନାହିଁ, ଭୋଗ ଦୋକାନର ନେଫଡ଼ା ମୁହାଁକୁ କଥା କହିବି ନାହିଁ, ପଣ୍ଡା ବ୍ରାହ୍ମଣର କିଭରେ ଏତେ ନାଲି ଏତେ ଓଦା କାହିଁକି ଅଛି ବୋଲି ପଚାରିବି ନାହିଁ, ପାହାଚ କଡ଼ରେ ଥିବା ତଳକୁ, ତଳର ଜଙ୍ଗଲକୁ ଚାହିଁବି ନାହିଁ, ଚାହିଁବି ନାହିଁ କି ସେଆଡ଼ୁ ବାଲବାଳୁଆମାନେ ଦାନ୍ତ ଖିଙ୍କାରି ମାଡ଼ି ଆସିବେ ନାହିଁ···ଇଲେ ବୋଉ ଲେ ! !

ବୋଉର କାନି ଧରିବାକୁ ନାହିଁ । କେହି ନାହିଁ ।

ନ ଥିଲେ ନାହିଁ । ସ୍ମୃତି ମୂଳପୋଛି ହୋଇଯାଇଛି । ବୃଦ୍ଧର ବାଲ୍ୟସ୍ମୃତି ଇତିହାସ ନୁହେଁ, ପ୍ରାଗ୍ ଇତିହାସ । ସୀମା କୁହୁଡ଼ି, ପାଉଁଶିଆ କଳାଧଡ଼ି, ଯେଉଁଠି ବଞ୍ଚିବାର ପଛ ମରଣ ସାଙ୍ଗରେ ମିଶିଯାଇଛି । ନା, ମନ୍ଦିର କଥା ମୋର କିଛି ମନେ ନାହିଁ । ମୁଁ ମନ୍ଦିରକୁ ଯାଇ ନାହିଁ ।

ସେଇଠୁଁ ମୁଁ ବାହାରିଲି । ମେନ୍‌ରୋଡ୍‌ରେ ନିଜକୁ ନିଜେ ଏକ ମୁହାଁ ହୋଇ ଚାଲିବାକୁ ଲାଗିଲି ।

ଆଃ, ଖରା କାଟୁଛି । ଛତା ଅଣିଥିଲେ ହୋଇଥାଆନ୍ତା ।

ଛତା ଆଣିବାର ନୁହେଁ । ପାଦରେ ଯୋତା ରହିଛି ସେଇ ଯଥେଷ୍ଟ । ମୁଁ ନିଜକୁ ଚେତାଇ ଦେଲି ଯେ ମାନବେନ୍ଦ୍ର ମହାନ୍ତି ସାଧାରଣ ଭ୍ରମଣରେ ବାହାରି ନାହାନ୍ତି । ସେ ଯାହା କେବେ କରି ନ ଥିଲେ ଆଜି କରିବାକୁ ଯାଉଛନ୍ତି । ପ୍ରୟାସ ସଫଳ କରିବାକୁ ହେଲେ ବିଶେଷ ଚେଷ୍ଟା ଆବଶ୍ୟକ । ଜୀବନବ୍ୟାପୀ ଯେଉଁ ସାଧନା କରି ହୋଇ ଥାଆନ୍ତା, ତାକୁ ଏଇ ଘଣ୍ଟାଏ ଦୁଇଘଣ୍ଟିଆ ଯାତ୍ରାରେ ସମାହିତ କରିବାକୁ ପଡ଼ିବ । ନିଜକୁ ଗୃବୁକ୍ ମାରିବାକୁ ହେବ···ମଧ୍ୟାହ୍ନର ଏଇ ଜ୍ୱାଳାରେ ନିଜକୁ ଛଟପଟ କଲେ ଯାଇଁ ଉଚ୍ଛାଟ ହୋଇ, ଉତଳା ହୋଇ ଲକ୍ଷ୍ୟରେ ପହୁଞ୍ଚି ପାରିବ । କାହାକୁ ଦେଖିବି ନାହିଁ, କାହା କଥା ଶୁଣିବି ନାହିଁ, ବିଚ୍ୟୁତ ବିଣା ନ ହୋଇ (ମରିଗଲି ମରିଗଲି ହୋଇ) ତୀର ପରି ଛୁଟିଯିବି ।

ତରତର ହୋଇ ପାଦ ପକାଇଲି, ଧଇଁସଇଁ ହୋଇ ଗ୍ଲଲି । କେମିତି ରାସ୍ତା ସାରି ପାହାଡ଼ ଧରିବି, ଉପରକୁ ଯିବି ।

ହନୁମାନ ସୁ' ଷ୍ଟୋର ସାମ୍ନାରେ ଇନ୍‌କିଲାବ୍‌ର ପାଲି ଲଗିଛି । ଯେଉଁ ନେତା ଜଣକ ବକ୍ତୃତା ଦେଉଛି ସେ ମୋତେ ଆଙ୍ଗୁଳି ଦେଖାଉଛି ନା କଅଣ ? ମୁଁ କଅଣ ଶତ୍ରୁପକ୍ଷ ?···ମୁଁ ସେଆଡ଼କୁ ଅନେଇବି ନାହିଁ । ତା'ର ବାପ ମୋ ସାଙ୍ଗ ହୋଇଥିବ । ସହପାଠୀ ସହକର୍ମୀ ହୋଇଥିବ । ଅନ୍ତତଃ ଏକା କଚେରି, ବ୍ୟାଙ୍କ୍, ଡାକ୍ତରଖାନାର ବେଞ୍ଚ୍‌ରେ ମୋ ଦେହକୁ ଦେହ ଲଗାଇ ବସିଥିବ । କମ୍ପା ଷ୍ଟୋର୍ ମାଲିକ, ଯାହାକୁ ସେମାନେ ଡାଉନ୍ ଡାଉନ୍ ବୋଲି କହୁଛନ୍ତି, ସେ ମୋର ସାଙ୍ଗ ହୋଇଥିବ । ଏଇ ସହରର ଯେତେକ ଚନ୍ଦାମୁଣ୍ଡିଆ ପାକଲ ବାଳିଆ ଅଛନ୍ତି ସମସ୍ତେ ମୋର ଚହ୍ଲା, ଭାଇବନ୍ଧୁ ସୋଦର । ମୁଁ ମୋ ସହରର କେତେ ପୁରୁଣା କେତେ ମୋଟା ମୂଷା ବୋଲି ଜାଣି ନାହଁ ? ହେଲେ ମୁଁ ସେଆଡ଼କୁ ଅନେଇଲି ନାହିଁ, ଆଗକୁ ଆଗକୁ ଗ୍ଲଲି ।

ସେ ଆଙ୍ଗୁଳି ଦେଖାଉ ବା ନ ଦେଖାଉ ବକ୍ତୃତା ଶୁଣୁଥିବା ଲୋକମାନଙ୍କ ମଧ୍ୟରେ ଜଣେ କେହି କ୍ଷଣିକ ପାଇଁ ହାଇ ମାରି ରାସ୍ତା ଆଡ଼କୁ ଗ୍ହିଁଥିବ ଓ ମୋତେ ଚହ୍ନି ପାରିଥିବ । ଚହ୍ନିଲା ପରେ ଆଶ୍ଚର୍ଯ୍ୟ ହୋଇଥିବ । ପ୍ରବୀଣ ବୁଦ୍ଧିବାଦୀ ମାନବେନ୍ଦ୍ର ମହାନ୍ତି, ସ୍ୱନାମଧନ୍ୟ ଓଡ଼ିଆ-ସାମ୍ବାଦିକ-ଲେଖକ, କୁଆଡ଼େ ଏମିତି ଧପାଉଛନ୍ତି ? ଦିନ ଦ୍ୱିପହର, ଛତା ନାହିଁ କି ବାଡ଼ି ନାହିଁ···କଥା କଅଣ ?

ଆଶ୍ଚର୍ଯ୍ୟ ହେବ ।

ଆଶ୍ଚର୍ଯ୍ୟ ହୋଇ ହସିବ ।

ମୁଁ ମଧ୍ୟ ହସିଲି । ଦୃଶ୍ୟକୁ ପଛରେ ପକାଇ ଦଉଡ଼ିଲି ।

ଦଉଡ଼ିଲି ଯେ ଲାଲ୍‌କୋଠି ସାମନାରେ ଫଳ ବିକୁଥିବା ନଣୁଆ ପାଖରେ ପହଞ୍ଚିଲି । ତାକୁ ମୁଁ କେବେଠୁଁ ଜାଣେ । ଅଥଚ ସେଦିନ ସେ ମୋତେ ଅପମାନ ଦେଲା, ତା' ଫଳପସରାରେ ହାତ ଦେଉ ନ ଦେଉଣୁ, ହଟିଯାଅ ବୋଲି କହିଲା । ସତେକି ମୁଁ ଗୋଟାଏ ସାଧାରଣ ଗରାଖ ।

ତା'ର ସାମନାରେ ପଡ଼ିଲି, ଆଉ ତା'ର ମୋତେ ନ ଚହ୍ନିବା ଛଡ଼ା, ଚହ୍ନି ସାରି ଆଶ୍ଚର୍ଯ୍ୟ ହୋଇ ନ ହସିବା ଛଡ଼ା ଅନ୍ୟ ଉପାୟ ନଥିଲା । ହେଲେ ହଉ, ମୁଁ ଦୃଶ୍ୟକୁ ପଛରେ ପକାଇ ..

ଏଥର ମଲି ! ଡାହାଣ ପାଖରେ ପବ୍‌ଲିକ ଲାଇବ୍ରେରୀ, ବାଁ ପାଖରେ ବହି ଦୋକାନର ଧାଡ଼ି । ବହିମାନଙ୍କ ସହିତ ମୋର ସାରା ଜୀବନର ସମ୍ପର୍କ । ଘଣ୍ଟା ଘଣ୍ଟା ଧରି ମୁଁ ସେମାନଙ୍କୁ ଛୁଇଁଛି, ଆଉଁସିଛି, ଶୁଙ୍ଘିଛି, ଅଳ୍ପ ସମୟ ଭିତରେ ଯେତେକ ସାରକଥା ଅଛି କହି ଦିଅ ବୋଲି ଫୁସୁଲେଇଛି । ଅଗତ୍ୟା ଏଠି ଯା'ଆସ କରୁଥିବା ଅନେକ ଲୋକ, ପାଠକ, ଗରାଖ ମୋତେ ଦେଖିଛନ୍ତି । ଗୋଡ଼ରୁ ମୁଣ୍ଡଯାଏ ଚହ୍ନିଛନ୍ତି । କେତେ ସମ-ସାମ୍ବାଦିକ, ସମ-ଲେଖକ ମୁଁ କଅଣ ଅଧିକା ପାଇଗଲି ହୋଇ ଭାବି ମୋତେ ଆକ୍ରମଣ କରିଛନ୍ତି, ମୋର ଦେହବନ୍ଧ ଉପରକୁ ଉହୁଙ୍କି ଆସି ନିଶ୍ୱାସ ଛାଡ଼ିଛନ୍ତି । ଆଜି ମୋର ଏଇ ଅପୂର୍ବ ଅପ୍ରତିହତ ଯାତ୍ରା ସେମାନଙ୍କର ଆଖିରେ ପଡ଼ିବ ନାହିଁ କେମିତି ?

ଗାନ୍ଧୀମାର୍ଗ ଛାଡ଼ି ସମାନ୍ତରାଳ ନେହେରୁ ଆଭିନେଉରୁ ବାଙ୍କି ଯାଇଥିଲେ ହୋଇଥାନ୍ତା । ଗଳିବାଟେ ଯାଉ ନାହିଁ , ତେଣୁ ଲୁଚି ଲୁଚି ପଳାଉଛି ବୋଲି କେହି କୁହନ୍ତା ନାହିଁ, ଅଥଚ ଏକାଠି ଏତେ ଚହ୍ନା ଲୋକଙ୍କ ହାବୁଡ଼ରେ ପଡ଼ନ୍ତି ନାହିଁ ।

କାହିଁକି ମ ? ମନ୍ଦିରକୁ ଯିବା ପାଇଁ ଏଇ ଜଣ ସବୁଠାରୁ ସିଧାସଳଖ ବାଟ ନୁହେଁ ? ତାହା ହେଲେ ?

କଥା ହେଉଛି କେଉଁ ରାସ୍ତାରେ କିଏ ମୋତେ ଚହ୍ନିବ ନାହିଁ କହିଲ ? ( ? ) ରୁ ଆଭିନେଉ, ଯେଉଁଠି ଅଦାଲତ ହାଇକୋର୍ଟ ଅଛି, ସେଠି ଆଡ୍‌ଭୋକେଟ୍

ମାନବେନ୍ଦ୍ର ମହାନ୍ତି ଅଛପା ରହିଯିବ ? ନା "ସୁପ୍ରଭାତ" ପ୍ରେସ୍ ରାସ୍ତା!, ନା ଆଉ କେଉଁ ରାସ୍ତା, ଗଳି, ସାହି, ଚଉକ୍ ଯେଉଁଠି ଲୋକମାନେ ମଗଜ ଖେଳାଇ କାରବାର ହୁଅନ୍ତି ?

ମୁଁ ଗଜାଙ୍ଗର କେଉଁ ଅଙ୍ଗରେ ଜରି ଯାଇ ନାହିଁ ?

ବେଶ୍ୟାପଡ଼ା ? ମୁଁ ଭିତରିଆ କୁରୁଳି ଖାଇଲି । ଭୁଲି ଯାଅ ନାହିଁ ଯେ ମୁଁ ଏଠି ପିଲାଦିନୁ ଅଛି । ପିଲାଦିନ ଏବଂ ବୁଢ଼ାଦିନ ଭିତରେ ଯୌବନ ଥିଲା, ଯୌବନର ଗୋଟିଏ ତରଳିଆ ଆରମ୍ଭ ଥିଲା···ହାଃ ହାଃ···

ମୁଁ ଡାହାଣ ବାଆଁକୁ ଭ୍ରୂକ୍ଷେପ କଲି ନାହିଁ । କିଏ ଦେଖୁଥିବାକୁ ହସୁଥିବାକୁ ବେଖାତିର କରି ଆଗେଇଲି । ଦଉଡ଼ିଲି ।

ହେଲେ ରାସ୍ତାଟାକୁ ଚଟ୍‌କରି ସାରି ଦେବାକୁ ଇଚ୍ଛା ହେଲା ନାହିଁ । କାହିଁକି ନା···କାହିଁକି ନା ଏଇ ଅସଲି ଗଜାଙ୍ଗର ଶେଷ । ତା'ପରେ ଅଚିହ୍ନା, ଅଶେଷ ଉଠାଣି । ମନ୍ଦିର ମାଙ୍କଡ଼ ।

ଥରେ ଉଠିବାକୁ ଆରମ୍ଭ କଲେ ପଛକୁ ଅନେଇ ହେବ ନାହିଁ ।

ଗତି ଧୀମେଇ ଗଲା ସିନା, ମୁଁ ଦୁଇପାର୍ଶ୍ୱକୁ ଅନେଇଲି ନାହିଁ । ମୋର କାନ ଦୁଇଟା ଖରାରେ ଜଳି ଯାଉଥିଲା, ମୁଁ ପରିଚିତମାନଙ୍କର କୋଳାହଳ ଶୁଣୁଥିଲି, ତଥାପି ଅନାଇଲି ନାହିଁ । ବାବୁନ ଭାଇ ଗୁଖି ଘରଖି ବନ୍ଦ କରୁଥିବ, ପ୍ରଫେସର ସେନାପତି ନୋଟ୍ କରି ଚାଲିଥିବ, ନୋଟ୍ କରି ଚାଲିଥିବ, ଅକବ୍ର ଅଣଓକିଲ କଣ୍ଟ୍ରୁର ପଇଁତରା ମାରୁଥିବ, ଦାର୍ଶନିକ ଦାମ ରଥ ସୂର୍ଯ୍ୟଙ୍କୁ ଅନେଇ ସିଗାରେଟ୍ ଫୁଙ୍କୁଥିବ···ମୋର ଯେତେକ ବୁଙ୍କିଆ ସାଙ୍ଗମାନେ, ଆହୁରି କେତେ ଅଛନ୍ତି, ମନେ ପଡ଼ୁ ନାହିଁ । ତାଙ୍କର କୋଳାହଳ । କେହି ହେଲେ ମୋତେ ଦେଖି-ଚିହ୍ନି ଆଶ୍ଚର୍ଯ୍ୟ ହେଉଥିବେ । ରହିଯିବ ? ସାମାନ୍ୟ କିଛି ସମୟ ରହିଗଲେ କ'ଣ ଉତଳା ପଣ କମିଯିବ ?

ଶବ୍ଦଗୁଡ଼ାକ ଖରାରେ ଗୋଳି ହୋଇ ମୋର କାନମୂଳରେ, ଆଖି କୋଣରେ ପିଟି ହେଉଥିଲେ । ବାତୁଳ ପରି । ମୁଁ ଆଉ ସମ୍ଭାଳି ପାରିଲି ନାହିଁ, କହିଲି ବେଶ୍, ମୁଁ ଦେଖିବି ତୁମମାନଙ୍କୁ । ବନଗାମୀ ରାମଚନ୍ଦ୍ରଙ୍କ ପରି । ଫେରି

ଯାହିବ ଥରୁଟିଏ, ତା'ପରେ···ମୁଁ ଯାହା ମନ କରୁଛି କରିବି । କେହି ମୋତେ ଅଟକେଇ ପାରିବ ନାହିଁ ।

ମୁଁ ଚାଲି ପଡ଼ିଲି । ଦେଖିଲି ।

ଦେଖିଲି କେହି ମୋତେ ଅନଉ ନାହାନ୍ତି । ମୋତେ ଦେଖି ହସୁନାହାନ୍ତି ।

ଦୁଇ ଆଖିରୁ ଖରତେଜ ପୋଛି ଦେଇ ଧୀରେ ଧୀରେ ଲକ୍ଷେ ଲୋକମାନଙ୍କୁ ଅନାଇଲି । କାହାରିକୁ ପାଇଲି ନାହିଁ !

ଜାଣିଥିଲି, ଜାଣିଥିଲି । ସେମାନେ କେହି ନାହାନ୍ତି । ମୋ ପାଇଁ ପୁ' ଷ୍ଟର୍ ପାଖରେ, ଫଳବାଲା ପାଖରେ, ଲାଇବ୍ରେରି ପିଣ୍ଡାରେ, ଦୋକାନରେ, ଆଗରେ ପଛରେ ଦୁଇ କଡ଼ରେ, କେହି ନଥିଲେ କି ନାହାନ୍ତି । ବୁଢ଼ା ମାନବେନ୍ଦ୍ର ମହାନ୍ତି ଅତୀତ, ବିସ୍ମୃତ । ଯେଉଁମାନେ ଚହ୍ନିଥାନ୍ତେ, କପଟ ପାକଲା ବାଲଆ ଚାନ୍ଦାମୁଣ୍ଡିଆ ଦଳ, ମରି ଖତମ୍ ହୋଇ ଗଲେଣି । ମଲେଣି, ନ ହେଲେ ଘରେ ଟୋକା ପୁଅଙ୍କ ବୋହୂର ମୁହଁକୁ ଚାହିଁ ବସିଛନ୍ତି । ପାନ ଖଣ୍ଡେ ସରବତ୍ ଟିକିଏ ଦେ' ଲେ ବୋଲି କୁନ୍ଥେଇ ହେଉଛନ୍ତି । ହୁଏତ ଯେତେକ ଯମଛଡ଼ା ଜରଦ୍‌ଗବ···

ଲଙ୍ଗଳା ହୋଇ ରାସ୍ତାରେ ଗଡ଼ି ଗଡ଼ି ଗଲେ ହୁଏତ କେହି ମୋ ଆଡ଼କୁ ଅନେଇବ । କିନ୍ତୁ ମାନବେନ୍ଦ୍ର ମହାନ୍ତି ବୋଲି ଚହ୍ନିବ ନାହିଁ ।

(କେବଳ ପୁଅ ଦେଖିଲେ ତା'ର ହାଲୁକ ଶୁଖିଯିବ । ବୋହୂ ଦେଖିଲେ କଣ କରିବ ? କଭ କାମୁଡ଼ି ପକେଇବ ? ନା ମୁଣ୍ଡକୋଡ଼ି କାନ୍ଦିବ ? )

ଦୁଇ ଆଖିରେ ରାଗ ତେଜ ଭରି ଦେଇ ମୁଁ ଗଜାଙ୍କୁ ଅନେଇଲି । ବନଗାମୀ ରାମଚନ୍ଦ୍ରଙ୍କ ପରି ନୁହେଁ । ଦୁର୍ବାସାଙ୍କ ପରି । କହିଲି, ଧିକ୍ । କହିଲି, ଭଲ, ମୁଁ ସେଇଆ ଚାହେଁ । ନିଜକୁ ଉଦ୍‌ବୋଧିଲି—

ମୁଁ ଅନନ୍ୟ

ମୁଁ ଏକୁଟିଆ

ମୁଁ ଅନନ୍ୟ···

ତେବେ ମୋର ଇଚ୍ଛା ହେଲା ଯେ ଡ଼ୋଣି ରସ୍ସା ଧରିବା ଆଗରୁ ଏବଂ ମାଙ୍କଡ଼ମାନେ ମୋର ଏକୁଟିଆପଣକୁ ଝୁଣ୍ଟିବା ଆଗରୁ, ମୁଁ ଗୋଟାଏ ଖେପା ଜାଲ ପକେଇ ମୋର ଏଇ ଗଳାଗଳି ସହରକୁ ଘୋଟେଇ ନେବି । ପଞ୍ଚସ୍ତରି ବର୍ଷର ସ୍ମୃତି-ସଖ୍ୟ-ପରିଚୟ ଖଟେଇ ଖାଅନ୍ତା ସମସ୍ତଙ୍କୁ ଏକାଠି କରି ନେବି । ଜଣକ ସାଙ୍ଗରେ ଆରଜଣର ମୁଣ୍ଡ ଲଢ଼େଇ କରିବି । ସ୍ତ୍ରୀ' ପୁଅ ସାଙ୍ଗରେ ତା' ବୋହୂ, ନେତା ସାଙ୍ଗରେ ପଣ୍ଡା ବ୍ରାହ୍ମଣ, ଜଜ୍ ସାଙ୍ଗରେ ଖାଉଁଆ । ଦେଖେଇ ଦେବି ଯେ ସବୁ ସମାନ, ସବୁ ସମାନ, ମୁଣ୍ଡ-ଖପୁରୀ । ମୋ ପୁଅ ଯେମିତି କେବଳ ଗୋଟାଏ ପୁଅ, ବୁଢ଼ା ବାପ ସାଙ୍ଗରେ ଆଗ ଭଳି ଆଲୋଚନା କରିବାକୁ ଚାହୁଁନାହିଁ, ବାବୁନ ଭାଇର ପୁଅ ମଧ୍ୟ ସେମିତି । ମୋ ବୋହୂ ଯେମିତି କେବଳ ଗୋଟାଏ ଯୁବତୀ ସୁନ୍ଦରୀ ବୋହୂ, ମୋତେ ଦେଖିଲେ ତା' କୁଟୁକୁରୁ ହସକୁ ପୋଛି ପକାଏ, କଣ୍ଡୁରିର ବୋହୂ ମଧ୍ୟ ସେମିତି । ବସନ ଭୂଷଣ ବାପ ବ୍ୟବସାୟ ବଦଳେଇ ଦିଅ, ସ୍ତ୍ରୀ ମୁଣ୍ଡକୁ ତା' ମୁଣ୍ଡ ଲଢ଼େଇ କରିଦିଅ, ଦେଖିବ ଏକାଭଳି ବାଜିବ । ଶୂନ୍ୟ-ସାର ମୁଣ୍ଡ-ଖପୁରି । ଟୋକା ସଙ୍ଗରେ ବୁଢ଼ା ସମାନ ? ହଁ, କାହିଁକି ନୁହଁ ସବୁ । ପ୍ରଭେଦ ଏତିକି ଯେ ମୃତ୍ୟୁ ଆମର ହାତ ପାହାନ୍ତାରେ ଅଛି । ସେଇଥିପାଇଁ ସେମାନେ ଆମକୁ ଭକ୍ତି କରନ୍ତି । ଅଣ୍ଟୁଆଁ ବାରନ୍ତି । ଆମେ ଖସିଲେ ସେମାନଙ୍କର ବେଳ କାଳ ଆସିବ, ସେମାନେ ପୂଜା ପାଇବେ । ମୃତ୍ୟୁ ତାଙ୍କ ପାଖକୁ ଆସିବ । ଏଇ ହେଲା ନିୟମ । ବାକି ସବୁ ସମାନ···ଅପ୍ରେମର, ସେକ୍ସର, ଅର୍ଥର, ସ୍ୱାର୍ଥର ବାସ୍ତବତା । ଆବିଳ ଦୁର୍ଗନ୍ଧ ସତ । ଦେଖ ମୋର ଖେପା ଜାଲରେ ଏକାଠି ଧରା ପଡ଼ିଛନ୍ତି, ଛଟପଟ ହେଉଛନ୍ତି । ପଶୁରୁନା, ପଶୁର ସେମାନଙ୍କ କାଦୁଅ ଗନ୍ଧଉଛି ନା ବାସୁଛି ?

ହିଂସା କରୁନାହିଁ, ଅଭିମାନ କରୁନାହିଁ । ନିର୍ମଳ ନିର୍ଗନ୍ଧ ମିଛକୁ ପାଇବା ଆଗରୁ ଶେଷଥର ପାଇଁ ତୁମମାନଙ୍କୁ, ଗଳାଗଳିର ଆପଣାର ଲୋକମାନଙ୍କୁ ଥରୁଟିଏ ଦେଖି ନେବାକୁ ଚାହେଁ । ପଞ୍ଚସ୍ତରି ବର୍ଷର ଅନୁଭବକୁ ଏଇ ଗୋଟିଏ ମୁହୂର୍ତ୍ତରେ ନିଶ୍ୱାସି ଛାଡ଼ି ଦେବାକୁ ଚାହେଁ । ଯେପରିକି ଅତୀତରେ ବଳକା ଅସନା ରହିଯିବ ନାହିଁ । ମୁଁ ଏକୁଟିଆ ତୀର ପଥ ଉପରକୁ ଉଠିବି ।

ମୁଁ ଆଜି ନହେଲେ କେବେହେଲେ ଏମିତି କରିଥାଆନ୍ତି । କିଛି ଗୋଟାଏ ମିଛକୁ ଧରି ଥାଆନ୍ତି । ହେଲେ ମୋର ସହରର ମନ୍ଦିର, ମୋର ମନ୍ଦିରର ମାଙ୍କଡ଼ଙ୍କୁ ବଳି ଚମତ୍କାର ମିଛ ଆଉ କଣ ଅଛି ?

ଆଚ୍ଛା, କିଏ ବେଶି ମିଛ,—ମନ୍ଦିର ନା ମାଙ୍କଡ଼ ?

ଏଇ ପ୍ରଶ୍ନକୁ ଉପରକୁ ପେଷି ମୁଁ ଗଳାଙ୍ଗଠାରୁ ବିଦାୟ ନେଲି । ସେମାନଙ୍କୁ ପିଠି କରି ଭବିଷ୍ୟତକୁ ଅନେଇଲି । ପାହାଡ଼ ଦିଶୁଚି ମନ୍ଦିର ଦିଶିବ, ଆସୁଛି, ଆସୁଛି···

କେହି ମୋତେ ଦେଖି—ଚହ୍ନିପାରି ନାହାନ୍ତି, ଭଲ ହୋଇଛି ।

(ପୁଅ ଅଫିସରେ ଥିଲା, ବୋହୂ ପଡ଼ଶା ଘରକୁ ଯାଇଥିଲା, ସେତିକି-ବେଳେ ମୁଁ ପଳେଇ ଆସିଛି । ନହେଲେ ଅବସ୍ଥାରେ ପଡ଼ିଥାଆନ୍ତି ।)

ବୋହୂଲୋ, ମୋ ପାଇଁ ମାନେ ମୃତ୍ୟୁପୂଜା ପାଇଁ ଯେଉଁ ସନ୍ଦେଶ ଖଣ୍ଡିକ ରଖିଥିଲି, ତାକୁ ତୋ ପୁଅ ଖାଇ ଦେଇଥିବ · ସାବଧାନ, ତାକୁ ମାରିବୁ ନାହିଁଟି !

ଡାହାଣ ହାତ ରାସ୍ତାରେ ସିଧା ସିଧା ଗଲେ ପ୍ରଦେଶ ରାଜଧାନୀ, ସେଇଠୁ ଟ୍ରେନ୍‌ରେ ପ୍ଲେନ୍‌ରେ କାର୍‌ରେ ଗଲେ ରାଷ୍ଟ୍ର ରାଜଧାନୀ । ସେଇ ବାଟେ କେଜାଣି କେତେଥର ଯାଇଛି । ପ୍ରତିଥର ଅଧିକା ବୁଦ୍ଧି ଓ ବୟସ ନେଇ ଫେରି ଆସିଛି । ବାଁ ହାତ ରାସ୍ତାରେ ମୋଟେ ଯାଇ ନାହିଁ । ମନ୍ଦିର-ମାଙ୍କଡ଼ ରାସ୍ତାରେ ଗଲେ କ'ଣ ମିଳିବ ?

ଯେଉଁ ଆଡ଼କୁ ଗଲେ ବା ଗଲେ ଗୋଟିଏ ଜିନିଷ ଅଧିକା ମିଳିବାର କଥା । ବୟସ । ସେଇ କଅଣ ଏମିତି ଅତିଶୟ ଦୁର୍ବହ ହୋଇ ଉଠିଲା ଯେ ମୁଁ ବାଆଁ ପାଖକୁ ଗ୍ଲାନି ହୋଇଗଲି ? ଭୁଲ୍, ବୟସରେ କିଛି ଯାଏ ଆସେ ନାହିଁ । ମୋର ମନ ହେଲା ।

ଉଦାସୀନ ସଂସାର କମ୍ବା ଭକ୍ତ ପୁଅବୋହୂଙ୍କ ଯୋଗୁ ପ୍ରକୃତି ବଦଳି ଗଲା ନାହିଁ । ମୋର ମନ ହେଲା ।

ବାରମ୍ବାର ସେଇ କଥା କହୁଛି, କାହିଁକି ମୋତେ ସନ୍ଦେହ କରୁଛ ବୁଝିପାରୁ ନାହିଁ । ଶେଷକୁ କହିବ ଯେ ଏଇ କେତେଦିନ ତଳେ ବୋହୂ ଯେଉଁ କେକ୍ ତିଆରି କରିଥିଲା, ମିଛରେ କହିଲା ଖାସ ମୋ ପାଇଁ କରିଛି, ତାକୁ ପାଟିକୁ

ନେଲ ବେଳେ ମୁଁ ହଠାତ୍ ତା' ମୁହଁକୁ ଅନେଇଲି, ଆଉ ଦେଖିଲି, ତା'ଙ୍କ ନିତାନ୍ତ ନିର୍ଗୁଣ ନିଷ୍କରୁଣ ଯୌବନ, ଏମିତି ହେବା ଉଚିତ ନୁହେଁ, ଉଚିତ ନୁହେଁ, ତା'ର ଜାଗାରେ ମୋର ବୁଢ଼ୀ ଥାଆନ୍ତା, ତା'ହେଲେ ମୋର ଓଠ ଏମିତି ଶୁଖିଯାଆନ୍ତା ନାହିଁ, ନିଜକୁ ଅକାରଣ ଲାଗନ୍ତା ନାହିଁ···କହିବ ଯେ ସେତିକି-ବେଳୁ ମୋର ପଳେଇ ଯିବାକୁ ଇଚ୍ଛା ହେଲା ?

ଚାଲେ, ଚାଲେ, ଡେରି କରି ଲାଭ ନାହିଁ । ଚାଲିଲି ।

ଜୟ ଶମ୍ଭୋ ! ବାଁ ପାଖ ଦ୍ୱାରାଧରି ଚାଲିଲି । ପାହାଡ଼ ଦେଖା ଯାଉଛି ! ମନ୍ଦିର ଦିଶିବ । ମନ୍ଦିର ଦିଶିବା ଆଗରୁ···

ପାହାଡ଼ର ପାଦ ଦେଶରେ ପହଞ୍ଚିବା ପାଇଁ ସମୟ ଲାଗିଲା ନାହିଁ । ଉଚ୍ଛନ୍ନ-ପଣ ପୁଣି ପ୍ରବଳ ହୋଇଉଠିଲା କି ନା, ସେଇଥିପାଇଁ । ଆଖିରେ ପଡ଼ିଲା ଯେ ଏତେ ଖରା ବେଳୁଟାରେ ମଧ୍ୟ ଅନେକ ଲୋକ ମୋର ଆଗରେ ପଛରେ ଚାଲିଛନ୍ତି । ସତେ କି ମନ୍ଦିର ରାସ୍ତା ବଜାରରାସ୍ତାର କ୍ରମଶଃ । କିଣାବିକା କାରବାରର ଅପରେକ ପର୍ଯ୍ୟାୟ । ଶମ୍ଭୋ ! ମୁଁ ଏମାନଙ୍କ ସାଙ୍ଗରେ ଚାଲିଛି ବୋଲି ମନେ କର ନାହିଁ ଯେ ମୁଁ ଏମାନଙ୍କ ଭିତରୁ ଜଣେ । ଏମାନେ ତୁମକୁ ସତ ବୋଲି ଧରି ନେଇଛନ୍ତି । ଅବିଳ ଦୁର୍ଗନ୍ଧ ସତର ବଡ଼ବାପ । ପାହାଡ଼ ଉପରେ ଚକାମାଡ଼ି ବସିଛ, ଭୋଗ ଖାଇ ଭକ୍ତ ପାଇ ଆଶା ବାନ୍ଧୁଛ । ଓକିଲ ପରି । ଜ୍ୟୋତିଷ ପରି । କିନ୍ତୁ ମୁଁ ଜାଣେ ତୁମେ ମିଛ, ନିର୍ମଳତମ ସୁନ୍ଦରତମ ମିଛ । କଳା ଓ କଳ୍ପନାର ବୁଢ଼ାବାପ ।

ବୃଥା ଦମ୍ଭ ନୁହେଁ । ମୋତେ ଅଯଥାରେ ଡରେଇବାକୁ ଚେଷ୍ଟା କର ନାହିଁ ।

କୁଷ୍ଠ ରୋଗୀ । ଅଶ୍ଳୀଳ ଦେହର କାନ୍ଦଣା, ଜୀବନ୍ତବିଷ । ମୁଁ ତା' ହାତକୁ ପଇସା ବଢ଼େଇ ଦେଲା ବେଳକୁ କଅଣ ବୋଉ ଚିତ୍କାର କରି ମୋତେ ଟାଣି ଆଣିଲା ଓ ସେତିକିବେଳେ ପ୍ରଥମ ମାଙ୍କଡ଼ ମୋତେ ଶିଙ୍କାରି ହେଲା ।

ଆଜି ମୁଁ ତା' ଟିଣରେ ଉଞ୍ଚେଇ କରି ପଇସା ପକେଇଲି । କେହି ଚିତ୍କାର କରି ଉଠିଲେ ନାହିଁ । ମାଙ୍କଡ଼ର ଲାଙ୍ଗୁଡ଼ଟିଏ ମଧ୍ୟ ଦିଶିଲା ନାହିଁ ।

ପଥର ପାହାଚର ଧାଡ଼ିରେ ଚଢ଼ି ଚଢ଼ି ଗଲି ଓ ସେମାନଙ୍କର ଝିଣରେ ଦାନ ପକେଇ ପକେଇ ଗଲି, ଅନ୍ୟମାନେ ଯେମିତି କରୁଛନ୍ତି । ଥରେ ମୋର ମନେ ହେଲା ଯେ ଉପର ପାହାଚରେ ଥିବା ଆଉ ଜଣେ ଦାସୀ ମୋ ଆଡ଼କୁ ଚାହିଁ ହସୁଛି । ଆତ୍ମୀୟତାର ହସ । ସତେ କି ଜୀବନର ପ୍ରତିଟି ଦିନ ଆମେ ଏଇ ଚଉ-ହଳିଆ କାମ କରି ଆସୁଛୁ ଏବଂ ଏଇଠି ଆମର ଭେଟ ହୁଏ । ରକ୍ଷା କର !

କିନ୍ତୁ ତା'ର ବିରାଟ ଭୁଲ୍‌କୁ କାଟିବା ପାଇଁ ମୁଁ କ'ଣ କରିଥାଆନ୍ତି ? ମୁହଁ ମୋଡ଼ି ଦେଇ ଥାଆନ୍ତି ? ଛାତି ଭିତରେ କେଉଁ ଶୀତଳ ଝରଟିଏ କୁଳୁକୁଳୁ ହୋଇ ଉଠିଲା, ତାକୁ ଫେରାଇ ଦେଇ ଥାଆନ୍ତି ?

ପହିଲି ପାହାଚ ଧାଡ଼ି ସରିଗଲା ପରେ ଚତୁଷ୍କୋଣ ସମତଳ ଭୂଇଁ । ଭୋଗ ମିଠା ଦୋକାନ, ଶମ୍ଭୁନାଥ ପ୍ରଭୁଙ୍କର ଦୋକାନ ଯେଉଁଠି ତାଙ୍କ ଲଙ୍ଗଟେହେଇ ଫଟୋ, ରୁଦ୍ରାକ୍ଷମାଳା ଓ ମହିମା ବର୍ଣ୍ଣନାର ବହି ବିକାହୁଏ । ଫୁଲ ଧୂପ ଦୋକାନ, ସାଧୁସନ୍ଥ ଆସ୍ଥାନ ଇତ୍ୟାଦି ଏବଂ ଗୋଟାଏ ମସ୍ତବଡ଼ ଓସ୍ତଗଛ, ତଳେ କୂଅ ଚଉତରା, କୂଅ ଉପରେ ପଟା, ପଟା ଉପରେ ମାଙ୍କଡ଼ । ଏଠି ଖରାତେଜ ନାହିଁ କହିଲେ ଚଳେ । ଯେତିକ ମଣିଷ ଓ ମାଙ୍କଡ଼ ( ଗୋଟିଏ ନୁହେଁ, ଗୋଟିକରୁ ବେଶି) ଖରା କଅଣ ତେଜ କଅଣ ଜାଣି ନ ଥିଲା ପରି ମନେ ହେଉଛନ୍ତି । ଠାକୁରଙ୍କ ପାଇଁ କଣାକାଣି ଚାଲିଛି, ଅଚଞ୍ଚଳ ମନମଉଜ, ନେଫେଡା ମୁହାଁ ନାହିଁ କି ଡରଉ ନାହିଁ, ମାଙ୍କଡ଼ ଦାନ୍ତ ଦେଖେଇଛି । ମାଙ୍କଡ଼ ମୋ ଆଡ଼କୁ ଅନେଇଛି । ମୁଁ ସେଥି ପ୍ରତି ଦୃଷ୍ଟି ନ ଦେଇ ଭୋଗ କିଣିଲି, ଅନ୍ୟମାନେ ଯାହା କରୁଛନ୍ତି ସେଇଆ କଲି ।

ଭୋଗ କିଣିଲାବେଳେ ଗୋଟିଏ ତରୁଣ ଦମ୍ପତିଙ୍କୁ ଦେଖିଲି । ଦୁହେଁ ମୋତେ ନମସ୍କାର କଲେ । ବେସନ ଲଡ଼ୁ ଆଗଭଳି ଭଲ ହେଉ ନାହିଁ, ମଗଜ ଲଡ଼ୁ ନଅନ୍ତୁ ବୋଲି ପରାମର୍ଶ ଦେଲେ । ଯାତ୍ରାପଥରେ ଏଇ ପ୍ରଥମେ ମୋତେ ଦୁଇଜଣ ଦେଖିଲେ-ଚହ୍ନିଲେ । ମୋର ସୁନାମ ଓ ପ୍ରବୀଣତାକୁ ସ୍ୱୀକାର କଲେ । ମୁଁ ମଗଜ ଲଡ଼ୁ କିଣିଲି, ପ୍ରସନ୍ନ ହେଲି ।

କେତେବେଳକେ ମୋର ଖିଆଲ ହେଲା ଯେ ସେମାନେ ଆଖି ଚାହାଁଚାହିଁ ଫୁସୁରୁ ଫାସୁରୁ ହେଲେ ନାହିଁ । ଆଶ୍ଚର୍ଯ୍ୟ ହେବାର କୌଣସି ଲକ୍ଷଣ ଦେଖାଇଲେ ନାହିଁ । ସତେ କି ମାନବେନ୍ଦ୍ର ମହାନ୍ତି ପକ୍ଷରେ ଏମିତି ଧର୍ମ କରିବା, ମନ୍ଦିରକୁ ଆସି ଭୋଗ କିଣିବା ସ୍ୱାଭାବିକ !

ପିଲାଗୁଡ଼ାକ । ବୋଧହୁଏ ମୋର ଲେଖା ପଢ଼ିବାର ସୁଯୋଗ ପାଇ ନାହାନ୍ତି, ମୋର ଭାଷଣ ଶୁଣି ନାହାନ୍ତି । ତାଙ୍କର ବାପାଦାଦାମାନେ ତାଙ୍କୁ ମୋର ପ୍ରଚଣ୍ଡ ବୁଦ୍ଧିବାଦୀ ଜୀବନଇତିହାସ ସଂପର୍କରେ ବିଶେଷ କିଛି ଶୁଣେଇ ନାହାନ୍ତି ।···ସେମାନେ କେଉଁଠି ଯାଇଁ ହେଲେଣି ! ତାକ ଛାଡ଼ିବ ? ଶୁଣ, ଆଜି ଗୋଟାଏ ବିଚିତ୍ର ଘଟଣା ଘଟିଲା, ମୋର ଆଜି ମନ୍ଦିରକୁ ଆସିବା ପାଇଁ ମନ ହେଲା ।

ଥାଉ । ବେଳେବେଳେ ଭ୍ରମ ସଂଶୋଧନ ନ କଲେ ମଜା ଲଗେ । ଏକଲର ମତଲବ କଅଣ, ଜକ୍ ଜାଣିଛ, ଦୁହେଁ ଜକ୍‌ରକୁ ବୋକା ବନଉଛନ୍ତି । ମୁଁ ମୋର ସମଯାତ୍ରୀମାନଙ୍କ ଉଦ୍ଦେଶ୍ୟରେ ମୃଦୁ ମୃଦୁ ହସିଲି ।

ମୋର ଧାରଣା ହେଲା ଯେ କ୍ରମଶଃ ମୋର ଭଲ ଲାଗିବାର ମାତ୍ରା ବଢ଼ି ଚାଲିଛି । ଏଇସ୍ବାଙ୍କୁ କଣ ଆନନ୍ଦ କୁହନ୍ତି ?

ସେଇଠୁଁ ଦେଖିଲି ଯୋଡ଼ାଏ ମାଙ୍କଡ଼ ଦୁଇଦିଗରୁ ମୋତେ ଚାହିଁଛନ୍ତି । ଆଖିରେ ତୀକ୍ଷ୍ଣ ଶ୍ଳେକାଳି ପଣ । ମୁଁ ଡରିଲି ନାହିଁ, କହିଲି—ଆସ, ଆସ, ମୁଁ ତୁମକୁ ଅନେଇ ରହିଛି ପରା ! କେଉଁ ଜନ୍ମଜନ୍ମାନ୍ତର ଅତୀତରୁ ଅପେକ୍ଷା କରିଛି । ଆସିବ, ମୁଁ ଚର୍‌ଚରେଇବ, କିନ୍ତୁ ତୁମେ ଯାହା କରିବା କଥା କରିଦେଇ ଚାଲି-ଯିବ । ଆସ, ଆସୁ ନାହଁ କାହିଁକି ?

ଦ୍ୱିତୀୟ ପାହାଚ ଧାଉଡ଼ି ଚକ୍‌କଣ, ଓଦା-ଓଦା । ଉଠିଲାବେଳକୁ ମନ୍ଦିରର ଚୂଡ଼ା ଦେଖାଯାଏ । ଘଣ୍ଟାର ଶବ୍ଦ, ଭକ୍ତଗଦ୍‌ଗଦ୍ ଭାବର ଗୀତ ପଦେ, ଆକୁଳ ଓହୋ-ଆହା ଉଚ୍ଚାରଣ ଶୁଣିବାକୁ ମିଳେ । ମୋ ପାଟିରୁ ମଧ୍ୟ ବାହାରିଲା—ହେ ଶମ୍ଭୋ ! ନେଇଯାଅ ମୋତେ ।

ଯାତ୍ରୀମାନେ ଚାଲିଛନ୍ତି । ମୁଁ ଚାଲିଛି । ଭଲ ଲାଗୁଛି । ପତ୍ୟେକ ଆମେ ସମସ୍ତେ ଏକାଠି ପ୍ରାଇଜ୍ ପାଇବା ପାଇଁ ଯାଉଛୁ, ସେଇ ବୁସ୍‌ସାର୍ଟ-କୁମ୍ଭପକା ଶାଢ଼ୀ ତରୁଣ ଦମ୍ପତି, ଗୋରା ଛୁଞ୍ଚିମୁହାଁ ହରିବୋଲିଆ, କାଳିଆ ଭୁସୁଣ୍ଡା ମଫସଲିଆ, ନଇଁନଇଁକା ବୁଢ଼ା, ହାଫ୍‌ପ୍ୟାଣ୍ଟ୍ ପିନ୍ଧା ସ୍କୁଲ ପିଲା ଦଳ ।

ଏଭଳି ଭଲ ଲାଗିବା ଉଚିତ ନୁହେଁ । ମୋର ପତଳା ପଣ ଉଣା ନୁହେଁ, କିନ୍ତୁ ମୁଁ ସମବେତ ସମ୍ମିଳିତ ନୁହେଁ । ମାନବେନ୍ଦ୍ର ମହାନ୍ତି ଅନ୍ୟତମ ନାଗରିକ, ଇତନା ବିଶ୍ୱାସ ଭକ୍ତ ନୁହେଁ । ନୁହେଁ, ନୁହେଁ, ନୁହେଁ !

ହେ ଶମ୍ଭୋ ! ନେଇଯାଅ ମୋତେ, ମାନେ ଏମାନଙ୍କ ମଧ୍ୟରୁ ଟେକ ନିଅ ବୋଲି ମୁଁ ମନେ ମନେ ପାଟି କରି ଉଠିଲି ।

ମାଙ୍କଡ଼ମାନଙ୍କର ସଂଖ୍ୟା ବଢ଼ିଗଲାଣି । ସେମାନେ ଆମରି ଆଗରେ ଇସର ପସର ହେଉଛନ୍ତି, ଦାନ୍ତ ଚିଙ୍କାଡ଼ୁଛନ୍ତି । ହେଇ, ଗୋଟାଏ ସାନ ମାଙ୍କଡ଼ ଜଣକର କାନ୍ଧ ଉପରକୁ କୁଦାମାରି ଗଛରୁ ଗଛକୁ ଡେଇଁଲା । ଅନ୍ୟମାନେ ହସିଲେ, ଲୋକ ମଧ୍ୟ ହସିଲା । ଗୋଟାଏ ବୀର ଜଣକର ଭୋଗ ଥାଳିରୁ କଦଳୀ କି କଅଣ ମାରି ନେଇଗଲା । ଆଉ ଗୋଟାଏ ଜନୈକ ବାବୁର ଲମ୍ବା ପଦ୍ମହରଣରେ ନାକ ଘଷି ହେଲା, ଗ୍ରନ୍ଥି ହୋଇ ଗଲାରୁ ତ' ଗୋଡ଼ରେ ଛନ୍ଦା ହେଲା । ଅପରେକ ହନୁ ସେଇ ତରୁଣ ଦମ୍ପତିର (କିମ୍ବା ତାଙ୍କର ପରି ଆଉ ଏକ ତରୁଣ-ଦମ୍ପତି, ପୃଥିବୀରେ ତରୁଣ ଦମ୍ପତି ଦୁର୍ଲ୍ଲଭ ନୁହେଁ ) ସାମନାରେ ବସି ଲାଙ୍ଗୁଡ଼ ବାଡ଼େଇଲା । ନାଲିଫଳବିଶେଷକୁ ଦୁଇ ହାତରେ ଧରି କେମିତି ଖାଇବାକୁ ହୁଏ ତା'ର ଦୃଶ୍ୟ ଦେଖାଇଲା । ମୋର ମନେ ହେଲା ସେମାନେ କାହାରିକୁ ଛାଡ଼ିବାକୁ ଚାହାନ୍ତି ନାହିଁ । ପ୍ରତି ଲୋକକୁ ଡରେଇ, ତା'ର ଭୋଗ-ଭାବକୁ ଚହଲେଇ ଅଇଁଠା କରି ଦିବେ, ତାହା ହେଲେ ଯାଇଁ ଛାଡ଼ିବେ । କିନ୍ତୁ କେହି ଡରୁ ନାହାନ୍ତି ତ ! ମୁଁ ମଧ୍ୟ ଡରୁ ନାହିଁ । କହୁଛି ଆସେ, ଆସେ, ମୁଁ ଟିଲାଦନୁ ଜନ୍ମଜନ୍ମାନ୍ତର ଅତୀତରୁ ତୋତେ ଅନେଇ ବସିଛି । ତୋର ଦାନ୍ତନଖ ନ ବାଜିଲେ ମୋର ଶ୍ରିତପୂର୍ତ୍ତି ହେବ ନାହିଁ , ମୁଁ ହରିଅଙ୍କୁ ଦେଖି ପାରିବି ନାହିଁ । ମିଛିରି ଆନନ୍ଦରେ ଡୁବି ଯାଇ ପାରିବ ନାହିଁ । କାହିଁକନା ତୁଇ ମୂଳରୁ ଶେଷଯାଏଁ ଅଛୁ, ଗୋଡ଼େ ଗୋଡ଼େ ଜଗିଛୁ, କେବଳ ଡରଉଛୁ , ଛୁଗୁଲେଉଛୁ, ଆତୁରି ସତ ଅଛୁ କନ୍ଦର୍ପ ଅଛୁ ଯାତନା ଅଛୁ ବୋଲି ଧମକଉଛୁ । ତୋ କାମ ଶେଷ ନ ହେଲେ ମୁଁ ଶୀର୍ଷରେ ପହୁଞ୍ଚିବି କେମିତି ?

ଆ' ମାଙ୍କଡ଼ ଆ', ଦସ୍ୟୁକରି ଆ', ଲଗେ ମୋ ସାଙ୍ଗରେ···

ପାହାଚ ଆସି ସରିବାକୁ ବସିଲାଣି, କେଉଁ ମାଙ୍କଡ଼ ଆସିବାକୁ ନାହିଁ । ସେଇଠୁଁ ମୁଁ ବୁଝିଲି । ବୁଝିଲି ଯେ ଏଇ ହେଉଛି ପ୍ରମାଣ, ନିଦର୍ଶନ । ଯେ ମୁଁ ଅନ୍ୟମାନଙ୍କ ସାଙ୍ଗରେ ସମାନ ନୁହେଁ । ମାନବେନ୍ଦ୍ର ମହାନ୍ତି ଗହଳିର ଜଣେ ନୁହେଁ, ଶମ୍ଭୁନାଥଙ୍କଠାରୁ ପ୍ରାଇଜ ପାଇବ ବୋଲି ଆସି ନାହିଁ । ସେ ଅନନ୍ୟ, ଏକୁଟିଆ ··ତା'କୁ ଏଇ ସର୍ବସାଧାରଣ ଯାତ୍ରୀ ମାଙ୍କଡ଼ ଛୁଇଁ ପାରିବେ ନାହିଁ । ଜୟ ଶମ୍ଭୋ ! ତୁମ ବସ୍ତୁରକୁ ଧନ୍ୟ କରିବ ।

ଶେଷ ପାହାଚରେ ଗୋଡ଼ ଦେବାକୁ ଯାଉଛି, ଆଖି ଆଗରେ ଦେଖୁଛି ମନ୍ଦିରର ଅନ୍ଧାରିଆ ଗୁହା, ଯାହା ଭିତରେ ଦୀପ ଜଳୁଛି, ଶମ୍ଭୁନାଥ ବସି ଅନେଇ-ଥିବେ ମୋତେ···ଏଇ ସମୟରେ ଅତର୍କିତରେ ଯାହା ଘଟିବାର ଥିଲା ଘଟିଲା । ମାଙ୍କଡ଼ ବିଜୁଳି ପରି ମୋ ଉପର ଦେଇ ଛୁଟିଗଲା, ଆଖି ନିମିଷରେ ମଗଜଲଡ଼ୁ ଗୋଟାଏ ଉଠେଇ ନେଇଗଲା । ତା' ଦେହ ମୋ ଦେହରେ ଲାଗିଲା । ମୁଁ ନିଜକୁ ସମ୍ଭାଳି ନେଲି, କିନ୍ତୁ ମୋର ସର୍ବାଙ୍ଗ କମ୍ପି ଉଠିଲା । ଭୟରେ, ଭୟ କଟି-ଯିବାରେ, ନା ଆନନ୍ଦରେ ମୁଁ କହି ପାରିବି ନାହିଁ ।

ଗୁହା ଭିତରକୁ ପଶିଲି ଆଗରୁ ମୁଁ ଆଖି ବୁଜି ସାରିଥିଲି । ସତେକି ମୋର ସତ୍ତା ଲୋପ ହୋଇ ଗଲାଣି, ମୁଁ ଏକୁଟିଆ ନୁହେଁ ।

× × ×

ଗୁହାର ଅନ୍ତରତମ ପ୍ରଦେଶରେ ଆଖିବୁଜି ରହିଲି । କିନ୍ତୁ ଚାରିପାଖରେ ଯେତେକ ଧ୍ୱନି, ବର୍ଣ୍ଣ, ଗନ୍ଧ, ପାଚିଲା କଦଳୀ, ନାଲି ମନ୍ଦାର, ମିଠା ପାଦୁକ, ବାସ୍ନା ଧୂଆଁ, କଅଁଳ କାନ୍ଦ, ମନ୍ତ୍ରଗୀତ, ବାଦୁଡ଼ି କାଚର ମିଚିରିର ଅପୂର୍ବ ସମନ୍ୱୟକୁ ଅନୁଭବ କଲି । ଅନୁଭବ କଲି ଯେ ସେମାନେ ସମସ୍ତେ ମୋତେ ଘୋଡ଼େଇ ମୋ ଚାରିପାଖରେ ଅଛନ୍ତି । ଶମ୍ଭୁନାଥଙ୍କ ପରିବାର । ହାତ ଯୋଡ଼ିଲି । ସେଇଠୁ କିଏ କହିବ ? ଦେଖିଲେ ସିନା କହିବ ?

ଦେଖୁ ନ ଥିଲି ବୋଲି କିଏ କହିଲା ? ଦେଖୁଥିଲି···କିନ୍ତୁ ଶମ୍ଭୁନାଥଙ୍କୁ ନୁହେଁ, ତାଙ୍କ ମଣିଷମାନଙ୍କୁ । ଦେଖୁ ଦେଖୁ ମୁହଁଗୁଡ଼ିକ ନିତାନ୍ତ ଘନ ଓ ନିବିଡ଼ ହୋଇ ଉଠିଲେ । ସେଇଠୁଁ ମୁଁ ଦେଖିଲି ଜଣକୁ, ମୋର ବୁଢ଼ୀକୁ, ଯେ ବୁଢ଼ୀ ନୁହେଁ ଗଜା ଟୋକୀ, ବୋହୂଠାରୁ ଆହୁରି ଟୋକୀ, ସୁନ୍ଦର ଛନଛନ-ମୁହଁକୁ ମୁହଁ ଯୋଡ଼ି ହସୁଛି ତ ହସୁଛି, ଦୁଷ୍ଟହସ, ଚଡ଼େଇଲି ପରି ଆଉ ନିମନ୍ତ୍ରଣ କଲା ପରି । ମୁଁ କହିଲି ତମେ କୁଆଡ଼େ, ମୁଁ ଶମ୍ଭୁନାଥଙ୍କୁ ଦେଖିବାକୁ ଆସିଛି । ସେ ଆହୁରି ହସିଲା, ସତେକି ମୋ ବଡ଼ପଣର ସାନକଥା, ଉଚ୍ଚ ଅଭିଳାଷର ଅଳିଆ କଥା, ସବୁ ତାକୁ ଜଣା ।

ପ୍ରଣମାମି ଶିବଂ ଶିବ କଳ୍ପତରୁଂ । କେଉଁ ପିଲାଦିନେ ପଢ଼ିଥିବା ଶିବ ସ୍ତୋତ୍ରର ଘୋଷାକୁ ବାରମ୍ବାର ବୋଲିବାକୁ ଲାଗିଲି ଏବଂ ସେ ହସରେ ହସରେ ମିଳେଇ

ଲେ । କିନ୍ତୁ ତା'ପରେ ଶମ୍ଭୁନାଥ ଆଉ ଦୁଇଜଣଙ୍କର ଚେହେରା ଦେଖାଇଲେ । ମୋର ପୁଅ ଓ ବୋହୂ । ମୁହଁ ଶୁଖେଇ ଦୋଷ କଲା ପରି ଛିଡ଼ା ହୋଇଛନ୍ତି ।

ସେଇଠି ଶମ୍ଭୁନାଥ ଫେଲ୍ ମାରିଲେ, ଆଖି ଖୋଲିଲା ବେଳକୁ ଭକ୍ତ ଗହଳରେ ମୁଁ ସତ ସତିକା ସେ ଦୁଇଜଣଙ୍କୁ ଦେଖିଲି । କିନ୍ତୁ ସେମାନେ ମୋଟେ ମୁହଁ ଶୁଖେଇ ନ ଥିଲେ ।

ସେମାନେ ଏଠି କେମିତି ଆସି ପହଞ୍ଚିଲେ ବୋଲି ମୁଁ ପଚାରିଲି ନାହିଁ । ଧରି ନେଲି ଯେ ସେମାନେ ମୋତେ ଖୋଜି ନେଇ ଘରକୁ ନେଇ ଯିବାପାଇଁ ଆସିଛନ୍ତି । ଗଙ୍ଗାଙ୍କର ରାସ୍ତାରେ କେହି ଜଣେ ମୋତେ ଦେଖି-ଚିହ୍ନି ସେମାନଙ୍କୁ ଖବର ଦେଇଛି । ବୋହୂ ପୁଅକୁ ଖବର ଦେଇଛି । ପୁଅ ବୋହୂକୁ ଖବର ଦେଇଛି ଯେ ବାପା ପୁଣି ରୁଷି କରି ଘର ଛାଡ଼ି ପଳେଇଛନ୍ତି । ଗୁନା ପୁଣି ତାଙ୍କ କାଗଜପତ୍ର ଘାଣ୍ଟିଛି, ସରବତ ଗିଲାସରେ ପୁଣି ମଲା ମାଛି ପଡ଼ିଛି, ଦାଣ୍ଡଘରେ ପୁଣି ତାଙ୍କ ଜେନେରେସନ୍‌କୁ ନେଇ କେହି କିଛି ଅପ୍ରିୟ ସତ୍ୟ କହିବାର ଶୁଣାଯାଇଛି, "ପୁଣି" କିଛି ଘଟିଛି ଯାହାକୁ ବୁଢ଼ା ବାପା ସହି ପାରିଲେ ନାହିଁ···ଏମିତି ନାନାଦି ଇତର ଅବାନ୍ତର କାରଣ ଯୋଡ଼ୁଥିବେ । ଆଗରୁ ବାର୍ କାଉନ୍ସିଲ୍ ହଲ, ମଧୁ ଗୁଡ଼ିଆ ଦୋକାନ, ମ୍ୟୁନିସିପାଲିଟି ବେଞ୍ଚରେ ଯାଇଁ ବସୁଥିଲେ, ଏଥର ରୁଷି କରି ମନ୍ଦିରକୁ ମାଡ଼ି ଆସିଛନ୍ତି । ବିଚିତ୍ର ନୁହେଁ । ବାପା କଠୋର ବୁଦ୍ଧିବାଦୀ ହେଲେ ମଧ୍ୟ ବୁଢ଼ା । ଏମିତି ଭାବୁଥିବେ । ଭାବନ୍ତୁ । ମୁଁ କେବଳ ବୁଢ଼ା ନୁହେଁ, ମୁଁ ତାଙ୍କ ବାପା···କେବଳ ବାପା ନୁହେଁ, ତାଙ୍କ ସ୍ୱର୍ଗପୁରିଆଣୀ ମାଆର ସ୍ୱାମୀ (ଏବଂ ପ୍ରେମିକ !) । ଶମ୍ଭୁନାଥ ଚେତେଇ ଦେଇଛନ୍ତି ।

ମୁଁ ମୋର ଆନନ୍ଦକୁ ତାଙ୍କ ମୁହଁରେ ଲେପି ହୋଇ ଯାଇଥିବାର ଦେଖିଲି । ଚିକ୍କଣ ଚିକ୍କଣହେଁ ଉଁ କି ଚୁଁ ନ କରି ତଳକୁ ଖସିଲି ।

ନାତି ଟୋକା ଗୁନା ବି' ସ୍ୱାଙ୍କ ସାଙ୍ଗରେ ଆସିଥିବ ବୋଲି ମୁଁ ଭାବି ନ ଥିଲି । ସେ କେଉଁଠି ଥିଲା ଚରଚରେଇ ହୋଇ ଦୌଡ଼ି ଆସି ମୋତେ କୁଣ୍ଢେଇ ଧରିଲା । କହିଲା—"ଜେଜେ ମା-ଙ୍କ-ଡ଼ !"

ମୁଁ ତଳେ ବସି ପଡ଼ି ତା ସାନ ଦେହକୁ ଦୁଇ ହାତରେ ମୁଠେଇ ଧରିଲି । ଆଖିରେ ଆଖି ରଖି ଅଭୟ ଦେଲି । କହିଲି—"ଚ୍ଛଃ ଡରକୁଲାଟାଏ ! ରହ, ଏଥର ମୁଁ ସବୁଦିନ ଏଠିକି ଆସିବି, ଆଉ ତୋତେ ସାଙ୍ଗରେ ନେଇ ଆସିବି ।"

